# କେଜାଣି କାହିଁକି

( ଉପନ୍ୟାସ )

ବୀରେନ୍ଦ୍ର ମହାନ୍ତ

ଝାନ୍ସୀ ପବ୍ଲିକେଶନ୍ସ
ଭୁବନେଶ୍ୱର

# କେଜାଣି କାହିଁକି

ବୀରେନ୍ଦ୍ର ମହାନ୍ତି

ଝାନ୍ସୀ ପବ୍ଲିକେଶନ୍ସ ତରଫରୁ ଶ୍ରୀମତୀ ଝାନ୍ସୀ ମହାନ୍ତିଙ୍କ ଦ୍ୱାରା ପ୍ରକାଶିତ । କ୍ୱାର୍ଟର ନମ୍ବର ୩ ଆର/୨ ଏକ୍ସପ୍ରେସ ୱେ କଲୋନି, ୟୁନିଟ୍-୮, ଭୁବନେଶ୍ୱର-୭୫୧ ୦୧୨ । ମାଧବୀ ପ୍ରିଣ୍ଟର୍ସ, କଟକ-୭୫୩୦୦୯ ଦ୍ୱାରା ମୁଦ୍ରିତ । ପ୍ରଚ୍ଛଦ ଶିଳ୍ପୀ-ଶ୍ରୀ ଶିବ ପାଣିଗ୍ରାହୀ ।

**KEJANI KAHINKEE**

*( Novel )*

**By Birendra Mohanty**

Published by Srimatee Jhansi Mohanty, Jhansi Publications, Qr. No. 3R/2 Express Way Colony, Unit-8, Bhubaneswar-751 012 and Printed at Madhabee Printers, Cuttack-753009, Cover Designed by Sri Shiba Panigrahi.

ଶୁଭ ପ୍ରକାଶ—ବ୍ୟାସପୂର୍ଣ୍ଣିମା, ୧୮ ଜୁଲାଇ, ୧୯୮୯

ମୂଲ୍ୟ-ତିରିଶି ଟଙ୍କା : **Price-Rupees Thirty only**

ପ୍ରାପ୍ତିସ୍ଥାନ

ଶବ୍ଦଲୋକ, ରାଣୀହାଟ, କଟକ-୧

ଗ୍ରନ୍ଥମନ୍ଦିର, କଟକ-୨

ଗ୍ରନ୍ଥାଳୟ, ଭୁବନେଶ୍ୱର

ଆପଣ ଗୁନୁର ଅଣ୍ଡ ଅଦରର ଛଳନାମା । ଆମ ଭିତରେ ଏତେ ବେଶୀ ବୁଝାମଣା, ଢଅାନଅ, ଅଳାପ ଆଲୋଚନା ବୋଧହୁଏ ଏଇଥି ପାଇଁ ଯେ...ଜୀବନ ଆମ ହାଙ୍ଗରେ ଏକା ପ୍ରକାରର ଲୁଚକାଳି ଖେଳେ । ଏଇଠି ଥାଏ, ପୁଣି ସାତ କଅାବାଡ଼ ଡେଇଁ ପଳାଏ ।

କେବେ କେମିତି ଅକାଳେ ସକାଳେ ବୁଲି ବାହାରିଲେ, କାହିଁକି କେଜାଣି ବର୍ଷା କରୁଛି, ମଝିରେ ପହଞ୍ଚିଲା ବେଳକୁ ପହଡ଼ ପଡ଼ି ହାରିଥାଏ, ଦୂର ଜାଗାରେ ଛୁଟି ବିତେଇବାକୁ ଚାହିଁଲେ, ଟ୍ରେନ୍ ବାତିଲ୍ ହୋଇ ଯାଇଥାଏ ।

ଉପରବାଲା ଆମ ସହିତ ଅନବରତ ରେସ୍ ଖେଳୁଥାଏ.... ଆଉ...କିସ୍ତି ମାତ୍ କରିବାକୁ ଅନେଇ ବସିଥାଏ । କୋଉ ଛକରେ ଆମେ ତାକୁ ଭୁଆଁ ବୁଲେଇ ଖସି ଯାଉଥାଉ ।

......ଆପଣା ଆପଣାର ଅବାସ୍ତବ ଲଗାମ୍‌ଛଡ଼ା ଦୁନିଆଁ ଭିତରେ ସ୍ୱପ୍ନର ଜାଲ ବୁଣି, ଆଲୁଅ ଅନ୍ଧାରର ଯୋଡ଼...ମଧ୍ୟବର୍ତ୍ତୀ...ଗୋଧୂଳିର ବଳୟ ପରି...ଉଷାର ପ୍ରହେଳିକା ପରି...ଖୋଜିଥାଉ...କୋଉଠି ମିଳିବ ସେ ଝଲମଲ ଆଲୋକର ଜରାୟୁ...ଗର୍ଭାଶୟ... । "ସି ସ୍ମାଇଲ୍‌ସ୍ ଦ' ସୁଇଟେଷ୍ଟ୍"—ଆପଣ କୁହନ୍ତି । ଗୁନୁ ହସର ପ୍ରେମରେ ଆପଣ ପଡ଼ି ଯାଇଛନ୍ତି କୋଉଦିନୁ । ସେ ହସ କୁଆଡ଼େ ବଉଦ ଫାଙ୍କରେ ସୂର୍ଯ୍ୟର ଚଉରର ଗୁହାରୀ । ସେ କୁଆଡ଼େ ହସି ହସି ଏମିତି ଉଡ଼େଇ ଦବ ତା' ସାରା ଜୀବନଟା ।

"To meet, to love and then to part
Is the sadest stoiy of every human heart"

ହେଲେ.. ଅମେ କଏ କାହାକୁ ଛୁଉଁଛେ ଯେ !

**ଶ୍ରୀମତୀ ଉର୍ବଶୀ ଯୋଶୀଙ୍କ**

**କର କମଳରେ........**

## ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ

୧ । ମୀନାକ୍ଷି ଓ ଅନନ୍ତ ଆକାଶ ( ଗଳ୍ପ ଗ୍ରନ୍ଥ )
୨ । ପୁନଶ୍ଚ ( ଗଳ୍ପ ଗ୍ରନ୍ଥ )
୩ । ମୋ' ମୃତ୍ୟୁପରେ ( ଏକାଙ୍କିକା ଗ୍ରନ୍ଥ )
୪ । ମୁଁ ଅଧ୍ୟାପକ ( ଗଳ୍ପ ଗ୍ରନ୍ଥ )
୫ । ରାଣୀ ବନୋଦିନୀ ( ଗଳ୍ପ ଗ୍ରନ୍ଥ )
୬ । ରବି ମିତ୍ତଲ କହୁଥିଲେ ( ଗଳ୍ପ ଗ୍ରନ୍ଥ )
୭ । ହେ ସୂର୍ଯ୍ୟ ( ଉପନ୍ୟାସ )
୮ । ବାଲି ଗରଡ଼ା ( ଗଳ୍ପ ଗ୍ରନ୍ଥ )
୯ । ପ୍ରିୟମ୍ବଦା ( ଉପନ୍ୟାସ )
୧୦ । ପୁଷ୍ପସାର ( ଗଳ୍ପ ଗ୍ରନ୍ଥ )
୧୧ । ଭଗବାନଙ୍କ ତୃତୀୟ ହସ ( ଗଳ୍ପ ଗ୍ରନ୍ଥ )

ନୀଳ ଆକାଶ ଉଦାସ ଥିଲା ।
ସେ ଜହ୍ନ ଫିକା ଥିଲା ।
ସେ ରାତି ନିଶୂନ ଥିଲା ।

ରେଖା କାନ୍ଦୁଥିଲା ଫୁଲି ଫୁଲି, ତକିଆରେ ମୁହଁ ମାଡ଼ି । ତା' ଗ୍ରନ୍ଥର ନୋଟା ସ୍ପର୍ଶ କାତର କୋମଳ ସ୍ଥାନରେ ଯେମିତି କ୍ଷୁର ଚାଲି ଯାଇଥିଲା ।

ସୁମନ୍ତ ଥରେ ତାକୁ କହିଥିଲେ ନାଁ "ମୋ' ଗ୍ରନ୍ଥରେ ତମର ଦାନ୍ତ ଲାଗିଛି !"

ଅଦ୍ଭୁତ ଅଜବ୍ ମଣିଷ !

କ'ଣ ମାନେ ହୁଏ ଏ ମୋରେଲ୍‌ରେ·········ଫାଲ୍‌ଟୁ ଆସ୍ଥ ବିଶ୍ବାସରେ ? ଜୀବନରେ ସଂଗ୍ରାମ କରିବାକୁ ଯାହା ପାଖରେ ଅନ୍ୟ କିଛି ଅସ୍ତ୍ର ନାହିଁ, ଏସବୁ ସେହିମାନଙ୍କର ଅବଲମ୍ବନ ।

କି ନିବିଡ଼ ଭାବେ ସେ ଭଲ ପାଇ ଆସିଥିଲା ଏଇ ମଣିଷଟାକୁ ! ତାଙ୍କୁରୁ ଉଲପାଯାଏ ! ତା'ର ସମସ୍ତ ଗୋପନ ବିଭବକୁ ! ବିଭ୍ରାନ୍ତ କଲାପରି ହସ, ବିହ୍ୱଳ କଲା ପରି ନୀରବତାକୁ !

ଉତ୍ତପ୍ତ ପ୍ରବାହ ପରି ସୁମନ୍ତ ଥିଲେ ରେଖା ପାଇଁ ଆକର୍ଷଣୀୟ ।

କି ବ୍ୟାକୁଳ ଭାବେ ସେ ନ ଚାହିଁଛି·········ତା'ର ଉଚ୍ଛଳ ଯୌବନ ସମେତ ବନ୍ଦୀ ହୋଇ ଯିବାକୁ ସୁମନ୍ତଙ୍କର ନିବିଡ଼ ଆଲିଙ୍ଗନର ବଳୟ ଭିତରେ ! ···ହଜି ଯିବାକୁ ନିର୍ଜନା ଲଗ୍ନରେ···ଧୀର ପବନରେ ! କେତେ ଥର ସେ ନୀରବରେ ହାତ ବଢ଼େଇ ନାହିଁ ? ( ···ମତେ ଛୁଅଁ )

କିନ୍ତୁ···ତାଙ୍କର ସେଇ ଗୋଟାଏ କଥା ! ପ୍ରେମ ପବିତ୍ର । ବିବାହ ଓ ଭଲ ପାଇବା ଏକା କଥା ନୁହେଁ । ତମେ ସନ୍ଦେହ ! ମୁଁ କିନ୍ତୁ ଚାହେଁନା କେହି ମତେ ଅଧିକାର କରୁ । କେହି ବି ମୋ' ଦେହ, ମନ, ଚିନ୍ତା ରାଜ୍ୟର ସାମ୍ରାଜ୍ଞୀ ହେଉ । ମୁଁ ଚାହେଁ ଧରି ରଖିବି ମୋ'ର ଗୀତ, ମୋ' ସ୍ୱପ୍ନ, ମୋ' ଲେଖା, ମୋ'ର ସବୁ କିଛିକୁ !

ମୁଁ ଖୋଜିବି । ଏକା ଏକା । ମୋ' ଅନ୍ବେଷଣରେ କେହି ଦଖଲ ଦେବେ ନାହିଁ ।

ତମେ ପ୍ରାପ୍ତି ଚାହଁ । ମୁଁ ଚାହେଁ ଯନ୍ତ୍ରଣା । କେତେ ଫରକ୍ ଆମ ଭିତରେ !

ହେଃ···ଘରୁଣା ! ସ୍ୟାଣ୍ଡଷ୍ଟ କୋଉଠିକାର ! କାପୁରୁଷ ! ସିଧା ସିଧା କହି ଦେଉ ନାହାନ୍ତି କାହିଁକି ? ଆପଣ ଗୋଟାଏ ଜଖୋଧକୁ ବାହା ହେବାକୁ ଚାହାନ୍ତି, ଯାହାକୁ ଆପଣଙ୍କ ଆଙ୍ଗୁଠିର ଟିପ ତଳେ ରଖି ପାରିବେ ।

ସୁମନ୍ତଙ୍କର ହେଇ ହସ । "ତମେ ମୋ' ପାଇଁ ସ୍ୱପ୍ନ ପରି ଅବାସ୍ତବ ।"

ଆଃ···

ରେଖାର ମନେ ପଡ଼ି ଯାଉଛି ସେଇ ପ୍ରଥମ ସାକ୍ଷାତ୍‌ର କଥା । ଅଣ୍ଟାଳିଟାଏ ଧରି ପୋର୍ଟିକୋ ତଳେ ଠିଆ ହୋଇଥିଲେ ସୁମନ୍ତ । ଢେଙ୍ଗା ପତଳା ଶରୀର । ତନ୍ଦ୍ରାକ୍ଳାନ୍ତ ଆଖି । କଳା ପ୍ୟାଣ୍ଟ । ଟେରିଲିନ୍ ସାର୍ଟ ଭିତରୁ ଗେଞ୍ଜିଟା ଫୁଟି ଦିଶୁଥିଲା ।

ରେଖା ଟେରେସ୍‌ରୁ ଓହ୍ଲେଇ ଆସିଲା, ହାବୁକାଏ ପବନ ପରି ।

"ସାର୍ ଅଛନ୍ତି ?' ସୁମନ୍ତଙ୍କ ଓଠରେ ସରୁ ହସ ଖଣ୍ଡେ ।

"ହଁ ।"

"ଖବର ଦେବେ । ମୁଁ ସୁମନ୍ତ ପଟ୍ଟନାୟକ । ଆସିଷ୍ଟାଣ୍ଟ ଇଞ୍ଜିନିୟର ।"

ନରମ, ଶ୍ରୁତିମଧୁର କଣ୍ଠସ୍ୱର । ପ୍ରତିଧ୍ୱନିତ ହୋଇଥିଲା ରେଖାର କାନ ପାଖରେ ।

ଦଉଡ଼ି ଦଉଡ଼ି ଘର ଭିତରକୁ ଚାଲି ଯାଇଥିଲା ରେଖା ।

ତା'ପରେ···ଅନେକ ଥର ଯିବା ଆସିବା ଭିତରେ, ସେଇ କଳା, ଉଜ୍ଜ୍ୱଳ, ଉତ୍ତେଜନାହୀନ ଆଖି ଦିଟା ଭିତରେ ସେ ଆବିଷ୍କାର କରିଥିଲା · କେବେ କେମିତି ·· କିଛି ଗୋଟାଏ ବ୍ୟାକୁଳତା । ତା'ର ସହଜାତ ବୁଦ୍ଧି କହି ଦେଇଥିଲା, ସୁମନ୍ତଙ୍କ ଛାତିରେ ଘାର ଜୁଏତ ଲାଗିଛି ।

ଅଠରଟି ବସନ୍ତ ବିତେଇ ଥିବା ଏଇ ଝିଅଟାର ଜୀବନ ବିଷୟରେ ତ କିଛି ଅଭିଜ୍ଞତା ନ ଥିଲା । କିନ୍ତୁ ସେ ବୁଝିଥିଲା ସୌନ୍ଦର୍ଯ୍ୟର ଶକ୍ତିଶାଳୀ ଅସ୍ତ୍ର ନେଇ ସେ କୌଣସି ଯୁଦ୍ଧରେ ସେ ବିଜୟ ହାସଲ କରି ପାରିବ ।

କଲେଜ କରିଡ଼ର୍‌ରେ ଚାଲି ଯାଉଥିଲା ବେଳେ ପିଲାମାନଙ୍କର ମତ୍ତ ଗର୍ଜନରେ ସେ ଫୁଲି ଉଠୁଥିଲା । କୋଉ ଗୋଟାଏ ଟୋକା ଗୀତ ଗାଉଥିଲା—

"ତା'ର ଦେହକୁ ଛୁଇଁବାକୁ ମନ କରୁଛି
ବଇଁଶୀ ଢରି ଢରି ଢରି ଢରି ବାଜୁଛି ।"

କଲେଜ ଡ୍ରାମାର ବେଷ୍ଟ ଆକ୍ଟର, ସେ ମାଇଚଆ, ହଳଦିଆ ଚକ୍‌କଣ ମୁହଁ । ରସିକ ଟୋକା, ଆମ୍ବଗଛ ମୂଳେ ଝୁଲିତ ଗୁହାଳୀରେ ଗୁହଁ ରହୁଥିଲା । ଶୂନ୍ୟ ଆକାଶକୁ ଧୂଆଁର ରିଂ ଛାଡ଼ୁଥିଲା । ରହସ୍ୟରେ···ଗୈରିକ ଗୁହାଳୀଟାଏ ଫୋପାଡ଼ି ଦେଇ ରେଖା ସାମାନ୍ୟ ହସି ଦେଉଥିଲା ଓ ଶାଢ଼ୀର ଅଞ୍ଚଳ ଟାଣି ନେଉଥିଲା ଦେହ ଉପରକୁ, ସେତିକିରେ···ସେ ଟୋକାର ଓଠ ମେଳା ହୋଇ ଯାଉଥିଲା । ସେ ଯେମିତି ମରୁ ପ୍ରାନ୍ତରର ଗୋଟାଏ ତୃଷାର୍ତ୍ତ ଯାତ୍ରୀ । ଅନେକ ଶୋଷ ତା'ଠାରେ । ଅନେକ ଜ୍ୱାଳା ।

ସୁମନ୍ତ ଆସିଲେ ରେଖା ବିବ୍ରତ ହୋଇ ପଡ଼ୁଥିଲା । ଝାଳେଇ ଯାଉଥିଲା, କୋଉ ଶାଢ଼ୀ ପିନ୍ଧିବ ସ୍ଥିର କରି ପାରୁ ନ ଥିଲା । ଗଦା ହୋଇ ଯାଉଥିଲା ଚଟାଣ ଉପରେ ଶାଢ଼ୀ ପରେ ଶାଢ଼ୀ । ଠିଆ ଦର୍ପଣର ସବୁ ବଡ଼ ଏକାଠି ଜଳେଇ ପ୍ରତିବିମ୍ବ ଦେଖୁଥିଲା । ଟ୍ରାଇଷ୍ଟ କରୁଥିଲା ଏପଟ ସେପଟ ।

ସେ ତ ଠିକ୍ ଅଙ୍ଗୁର ଲତାଟିଏ ପରି ଦିଶୁଛି !

ପ୍ରତିବିମ୍ବର ଚେହେରାରେ ତା'ଗୁଡ଼ା ଫୁଲି ଉଠୁଥିଲା ।

ଏମିତି ଫିଗର୍ କାହାର ଅଛି ?

ରଜନୀଗନ୍ଧା ଗନ୍ଧରେ···ପାଉଡ଼ର ରୁଣ୍ଡୁବୁଣ୍ଡୁ କରି···ଯେବେ ସେ ବାହାରି ଆସୁଥିଲା ଦର୍ପଣ ଆଗରେ ।

ଓଠରେ ଲିପଷ୍ଟିକର ପ୍ରଲେପ ଦେଉଥିଲା । ସାମ୍ପୁ କରା ବବ ବାଳକୁ ଫାଙ୍କେଇ ନେଉଥିଲା ।

ଇଣ୍ଟିମେଣ୍ଟ୍ ସ୍ପ୍ରେ କରୁଥିଲା···କାଖତଳେ, ବେକ ମୂଳେ, ଏଠି ସେଠି ।

ଅପରୂପ ଲାବଣ୍ୟ, ଆଖିର କଟାକ୍ଷ, ମୁକୁଳା ମୃଣାଳ କଟି ଦେଖିଲେ ହଲେଇ ଦୋହଲେଇ ଯେମିତି ଗୋଟାଏ କୋଉ ତାଳରେ ସେ ବାହାରି ଆସୁଥିଲା ।

ସାରଙ୍କର ଅଧସ୍ତନ କର୍ମଚାରୀ । ସାହାନ କାନ୍ଥ ନେମିତି ଆପଣାର ଆପଣାର ଭାବୁଥିଲେ ସୁମନ୍ତଙ୍କୁ ।

ତାଙ୍କର ମାୟା ଲାଗି ଯାଇଥିଲା । ଯେମିତି ସେ ଅନୁପମ ମହାପାତ୍ରଙ୍କର ଅଧସ୍ତନ ନୁହଁନ୍ତି, ଅନୁଜ ।

ରୁନୁ ବାପାଙ୍କ ପାଇଁ ବି ଅବୋଧ ମଣିଷ ଥିଲେ ସୁମନ୍ତ । ରୁନୁ ବାପାଙ୍କ କହୁଥିଲେ, ସୁମନ୍ତ କ'ଣ ଚିନ୍ତା କରନ୍ତୁ ବୁଝି ହୁଏନା । ଭଦ୍ର, ମାର୍ଜିତ ଅଥଚ

ଏତେ ନିଭୃତ କାହିଁକି? ଖିଆଲି, ଖିଲୁକ ମଣିଷଟାଏ। ସ୍ୱପ୍ନ ଦେଖିବାକୁ ଭଲ ପାଆନ୍ତି। କିନ୍ତୁ ବାସ୍ତବ ଦୁନିଆଁ ସହିତ ତାଙ୍କର ଯେମିତି କିଛି ସମ୍ପର୍କ ନାହିଁ। ହର୍ଷ ନାହିଁ, ବିଷାଦ ନାହିଁ, କାହାକୁ ଭଲ ପାଆନ୍ତି ବା ଭଲ ପାଆନ୍ତି ନାହିଁ ସେଥିରେ ଯେମିତି ବି କିଛି ମାନେ ନ ଥାଏ !

ଆଜି କାଲି ଦୁନିଆଁରେ ଏମିତି ନିରସକ୍ତ ମଣିଷ କାହାନ୍ତି ?

ରୁନୁ ଭଉଜ ତାଙ୍କୁ ବୁଝାଉଥିଲେ। ଏ ସଚ୍ଚୋଟ ପଣିଆର କ'ଣ ମାନେ ହୁଏ? ଦେଖୁ ନାହାନ୍ତି, ଏ ସାରା ଦେଶଟା କେମିତି ଚାଲିଛି ! ସରକାରୀ ଡାକ୍ତରଖାନାରେ ବିନା ପଇସାରେ ରୋଗୀର ଚିକିତ୍ସା ହୁଏ ନାହିଁ। ପଇସା ଖର୍ଚ୍ଚ କଲେ ପାଠ ନ ପଢ଼ି ପିଲା ପ୍ରଥମ ଦଶଜଣଙ୍କ ଭିତରେ ଆସିଯାଏ। ଆର୍‌ବିଟ୍ରେସନ୍ ମାମଲାରେ ଅବସର ପ୍ରାପ୍ତ ବିଚାରପତିମାନେ ଲକ୍ଷ ଲକ୍ଷ ଟଙ୍କାର ଧାଡ଼ିକିଆ ଆୱାର୍ଡ ଦେଇ ଦିଅନ୍ତି। ସମସ୍ତେ ମିଳିମିଶି ରାଜକୋଷ ଲୁଟିବାରେ ବ୍ୟସ୍ତ। କାହିଁକି ଆପଣ ଏତେ ନିରସକ୍ତ ?

ରୁନୁ ଭଉଜ ପରିହାସ କରନ୍ତି, ଆମେ ଆପଣଙ୍କୁ ଯଦି ନିର୍ବୋଧ କହୁ ?

ଉତ୍ତରରେ ସୁମନ୍ତ କୁହନ୍ତି, "ସେସବୁ କ'ଣ ଜୀବନର ଲକ୍ଷ ଏବଂ ଅନ୍ତ ?"

ସୁମନ୍ତ ଏକାକିଆ ମନେ ହୁଅନ୍ତି। ବନ୍ଧ, ସ୍ୱପ୍ନ ଓ ଆଦର୍ଶକୁ ମୁଠେଇ ଧରି ଯେମିତି ବିଜନ ମଣିଷଟାଏ ଠିଆ ହୋଇଛି।

ଛାତ ଉପରେ, ଅଧା ଅନ୍ଧାରରେ ରେଖା ତାଙ୍କ କବିତା ଶୁଣେ। ତା' ମନର ଭାବ ଉଚ୍ଚରୁ ଉଚ୍ଚତର ହୁଏ। କିନ୍ତୁ ··ପ୍ରତିଟି ଥର ଖସିଯାଏ ହାତ ପାହାନ୍ତାରୁ।

ରେଖା ପାଇଁ ବି ସୁମନ୍ତ ହୋଇ ପଡ଼ନ୍ତି ଦୁର୍ବୋଧ୍ୟ ମଣିଷ। ସେ ଉତ୍ତେଜିତ ହୁଏ। ତା' ଭିତରେ ବଢ଼ି ଚାଲେ ବ୍ୟାକୁଳତା ; ବିଜୟ ହାସଲ୍ କରିବାର ନିଶା।

କୌଣସି ପରାଜୟକୁ ସ୍ୱୀକାର କରି ନେବା ତା' ପାଇଁ କଣ ସମ୍ଭବ ?

ଯେତେବେଳେ ସୁମନ୍ତଙ୍କ ଆଖିର ପରଦା ଖସି ପଡ଼ୁଛି, ଚିନ୍ତା ସବୁ ଉଲଗ୍ନ ହୋଇ ପଡ଼ୁଛନ୍ତି, ରେଖା ତ ଦେଖିଛି କିଛି ବ୍ୟାକୁଳତା, କିଛିଟା ଆବେଗ !

କିନ୍ତୁ···ସେ କ'ଣ ହେଲା ?

ସିଧା ସଳଖ ସୁମନ୍ତ ଯେ ଟୋ' କରି ମନା କରି ଦେଲେ ! କହିଲେ, ମତେ ବାହା ହୋଇ ରେଖା ସୁଖି ହୋଇ ପାରିବନି !

ଖାଇ ବି ବୁଝିଗଲେ । ସୁମନ୍ତଙ୍କ ବାହାଘର ସ୍ଥିର କରି ଦେଲେ ରେଖାର ଦାଦା ଝିଅ ଭଉଣୀ ଗାୟତ୍ରୀ ସହିତ । ଗାୟତ୍ରୀ ତା'ଠାରୁ ବୟସରେ ବଡ଼ । ଦାଦା ଜଣେ ସାମାନ୍ୟ କମ୍ପାଉଣ୍ଡର୍ ।

…ସୁମନ୍ତ !

ତମେ ଜଣେ କପଟ ଇଡ଼ିଅଟ୍ ?

ଗାୟତ୍ରୀ କ'ଣ ମୋ' ସହିତ ତୁଳନା ହେଲା ପରି ଝିଅ ?

ରେଖାର ଇଚ୍ଛା ହେଉଥିଲା, ସୁମନ୍ତଙ୍କୁ ଆଗରେ ପାଇଲେ ଏମିତି ଏକ ଆପ୍‌ପଡ଼୍ ମାରନ୍ତା ଯେମିତି ପାଞ୍ଚ ଆଙ୍ଗୁଳିର ଚିହ୍ନ ରହି ଯାଆନ୍ତା ତାଙ୍କ ଗୋରା ତକ୍ ତକ୍ ହାଡ଼ୁଆ ମୁହଁ ଉପରେ ।

ରାଗ, ଅବସାଦ, ଅପମାନ ସବୁ ମିଶି ତା' ଛାତିର ପଞ୍ଜରାକୁ ସତେ ଅବା ଫଟେଇ ଦେବ !

ଯନ୍ତ୍ରଣା ସବୁ ଲୁହ ହୋଇ ଖସି ପଡ଼ୁଥିଲା । ସେ କହିଁ କହିଁ ହେଇ ଆହୁରି ଜୋର୍‌ରେ କାନ୍ଦି ଉଠିଲା ।

( ୨ )

ଅଳ୍ପ ଦିନ ଭିତରେ ସୁମନ୍ତଙ୍କର ବିବାହ ହୋଇ ଯାଇଥିଲା ଗାୟତ୍ରୀ ସହିତ । ଗାୟତ୍ରୀ ଅତି ସୁନ୍ଦରୀ ନ ଥିଲା । ଛୋଟିଆ ମଣିଷଟିଏ । ଶାନ୍ତ, ଶୀତଳ ଗୃହିଣୀ । ନରମ ଛୋଟ ଛୋଟ ହାତ ଦି'ଟା ତା'ର ସବୁବେଳେ କିଛି ନା କିଛି କାମରେ ଲାଗି ରହୁଥିଲେ । ଅଳ୍ପ କଥା କହୁଥିଲା । ମଝିରେ ମଝିରେ ବାଳିକା ସୁଲଭ ହସ ଖଣ୍ଡେ ଖଣ୍ଡେ ହସି ଦେଉଥିଲା ।

ସୁମନ୍ତଙ୍କର ସୀମିତ ଆୟ ଭିତରେ ସେ ନିଜକୁ ଖାପ ଖୁଆଇ ଠିକ୍ ଚଳେଇ ନେଇ ପାରୁଥିଲା । ଦରମା ମାସକୁ ମହଙ୍ଗା ଭତ୍ତା ମିଶେଇ ଚାରି ଶହ ଅଠଷଠି ଟଙ୍କା । ଲୋନ୍ ଷ୍ଟାଇପେଣ୍ଡ୍ କଟିଯାଏ ପଞ୍ଚଷଠି ଟଙ୍କା । ବାକି ଘରଭଡ଼ା, ଜି. ପି. ଏଫ୍ ଆଦି ବାଦ୍ ଯାଇ ଘରକୁ ଆସେ ତିନି ଶହ ଷୋହଳ ଟଙ୍କା । ଦୁ' ପ୍ରାଣୀଙ୍କ ସଂସାର । ଚଳିଯାଏ ଭଲରେ ଭଲରେ ।

ଗାୟତ୍ରୀ ନିଜକୁ ଖାପ୍ ଖୁଆଇ ନେଇଥିଲା । ଗ୍ରହଣ କରି ନେଇଥିଲା ସୁମନ୍ତର ଆଦର୍ଶ ।

ପିଲାଦିନୁ କୌଣସି ପ୍ରୋଟେକ୍‌ସନ୍ ପାଇ ନ ଥିବା ଏଇ ଏକା ଏକା ମଣିଷଟାର, ସେ କେବଳ ସ୍ତ୍ରୀ ନୁହେଁ, ମା', ଭଉଣୀ, ବାନ୍ଧବ ଓ ଅନ୍ୟାନ୍ୟ ସବୁ

ନାରୀ ଚରିତ୍ରର ମିଶ୍ରଣରେ ଗୋଟାଏ ମମତାମୟୀ ସ୍ନେହଶୀଳା ନାରୀର ମୂର୍ତ୍ତିମନ୍ତ ଅବତାର । ସେ ଯେମିତି ଦୃଢ଼ସଂକଳ୍ପ ଥିଲି ସୁମନ୍ତଙ୍କ ଦୁଃଖର ସମସ୍ତ ଶିକୁଳି ଛିଣ୍ଡେଇ ତାଙ୍କୁ ମୁକ୍ତ କରି ଦେବାକୁ ।

ଜବାବ୍ଦୀ ମନ୍ତ୍ରୀ ଅନୁପମ ମହାପାତ୍ର ରେଖାର ବାହାଘର ସ୍ଥିର କରିଦେଲେ ଜୟନ୍ତ ମହାପାତ୍ର ଆଇ. ପି. ଏସ୍.ଙ୍କ ସହିତ । ଏ. ଏସ୍. ପି. ରାଇରଙ୍ଗପୁର ।

ଅନୁପମଙ୍କର ଦାଦାଝିଅ ଭଉଣୀ ଗାୟତ୍ରୀ । ଦାଦାଙ୍କର ତ କିଛି ବି ସାମର୍ଥ୍ୟ ନ ଥିଲା । ପ୍ରାୟ ସାରା ବାହାଘରର ଖର୍ଚ୍ଚ ତୁଲେଇ ଥିଲେ ଅନୁପମ । ଗୋପନରେ ପଚାରିଥିଲେ ସୁମନ୍ତଙ୍କୁ, କୁହ କ'ଣ ନେବ ?

ଭୁବନେଶ୍ୱରରେ, କଟକରେ, ଢେଙ୍କାନାଳରେ କୋଉଠି ଜମି ତମ ପାଇଁ ସୁବିଧା ହେବ ? ସୁମନ୍ତ ନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରିଥିଲେ । ଆରେଃ ! ସ୍କୁଟରଟା ତ ଆଜିକାଲି ଅତି ସାଧାରଣ କଥା । ସେଇଟା ନେବ ନାହିଁ କାହିଁକି ?

ସୁମନ୍ତ କିନ୍ତୁ କିଛି ବି ନେଇ ନ ଥିଲେ । ସେଇ ଜିଦ୍‌ଖୋର୍ । ଯୌତୁକ ନେବ ନାହିଁ । ଖାଲି ଝିଅଟିକୁ ନେଇ ଆସିଥିଲେ ସୁମନ୍ତ ।

ତାଙ୍କର କହିବା କଥା ବା ଲେଖିବା ଏବଂ ବଞ୍ଚିବା ଭିତରେ ବିଶେଷ ଫରକ ନ ଥିଲା । ସେ କହୁଥିଲେ—ଯଦି ନୈତିକ ସ୍ଖଳନ ହୁଏ, ବିବେକକୁ ହତ୍ୟା କରିବାକୁ ପଡ଼େ, କ'ଣ ମାନେ ହୁଏ ଏମିତି ବଞ୍ଚିବାରେ ?

ଅନୁପମ କହୁଥିଲେ, ତମର ଯୋଗୀ ହେବାର ଥିଲା ସୁମନ୍ତ ! ହାଇ ଓ ! ଜୀବନଟା ଏତେ ପବିତ୍ର ହେଲେ ତାକୁ ତ ଛୁଇଁ ହେବନି ? ଟିକେ ବେତାଳିଆ ହେଉ ! ଛନ୍ଦ ପତନ ରହୁ ଜୀବନରେ ! କିଛିଟା କମ୍ପ୍ରୋମାଇଜ କର । କିଛିଟା ସାଲିସ୍ ତ ଦରକାର !

ମୁଁ ତ ବାବା ଭୋଗୀ ! ଭଲ ମନ୍ଦ, ପାପ ପୁଣ୍ୟ, ନୀତି ଅନୀତି କଥା ବିଚାର କରେନା । ଏ ଜନ୍ମର ଫଳ ଯଦି ଆର ଜନ୍ମରେ ମିଳିବ, କି ଲାଭ ସେଥିରେ ବିଶ୍ୱାସ କରି ? ଯେମିତି ଆମେ ମଞ୍ଜିଟେ ପୋତିଲେ ଅଳ୍ପ କେତେ ଦିନ ଭିତରେ ଫଳ ଖାଇ ପାରୁଛେ, ସେମିତି ଯଦି ଏଇ ଜୀବନରେ ସବୁ କର୍ମଫଳ ମିଳି ଯାଆନ୍ତା ଏଇ ଜନ୍ମରେ, ଲୋକେ ଧର୍ମ ହୁଡ଼ନ୍ତେ କାହିଁକି ? କରପ୍ସନ୍ ମୋଟେ ହୁଅନ୍ତା ନାହିଁ ।

ମୁଁ କହେ, ଇନ୍ଦ୍ରିୟ ମାନଙ୍କୁ ଆନନ୍ଦ ଦେଇ ଯାଅ । ଭୋଗ କରି ଯାଅ । ଯାବତ୍ ଜୀବେତ୍, ସୁଖଂ ଜୀବେତ୍ । ଚାର୍ବାକ୍ ଦର୍ଶନ । ମୁଁ ବାବା ହେଡୋନିଷ୍ଟ । ସୁଖବାଦୀ ।

ଅନୁପମ ହୋ ହୋ ହୋଇ ହସନ୍ତି।

ସୁମନ୍ତ, ତମେ ଭାଗ୍ୟବାନ ! ଗାୟତ୍ରୀର ପୋଏଟିକ୍ ସେନ୍‌ସିବିଲିଟି ଅଛି। ବିବାହଟା ତା' ପାଇଁ ନର୍ବାଣ।

ତମ ସଂସାରକୁ ସେ ଠିକ୍ ସଜେଇ ନେବ। ···କହୁଥିଲେ ସିନା ଏତେ କଥା···କିନ୍ତୁ ଅନୁପମ ଅସୁବିଧାରେ ପଡ଼ି ଯାଇଥିଲେ।

ତାଙ୍କ ପାଖକୁ ଧିରା ଭିତରେ ଅନେକ ଆପତ୍ତି ଅଭିଯୋଗ ଆସିଲାଣି। କାମାକ୍ଷା-ନଗରର ପ୍ରଭାବଶାଳୀ କଣ୍ଟ୍ରାକ୍ଟର୍‌ମାନେ ସୁମନ୍ତଙ୍କ ବିରୁଦ୍ଧରେ ସ୍ୱର ଉଠେଇଲେଣି। ପଇସା ନେଉ ନାହାନ୍ତି ବୋଲି ଏତେ ଷ୍ଟ୍ରିକ୍ଟ ହେଲେ କାମ ହେବ କେମିତି ? ଦେଖନ୍ତୁ ସାର୍ ! ସ୍ପେସିଫିକେସନ୍‌ରେ ସଂସାରରେ କେଉଁଠି କାମ ହେଲାଣି ? ସୁମନ୍ତ ବାବୁ ବଡ଼ ଅସୁବିଧା କରୁଛନ୍ତି। କଂକ୍ରିଟ୍ ହେବ ମାନେ ମେଟାଲ୍ ଧୂଆ ହେବ। ବଡ଼ ବଡ଼ ସାଇଜ୍ ହୋଇ ଯାଉଛି, ତାକୁ ଭାଙ୍ଗ। ଏ ବାଲିର ଦାନା ଗ୍ରେଟ। ମୋଟା ବାଲି ଆଣ। ମିକ୍‌ସ୍ ପାଖରେ ଜଗି ଜଗୁଆଳି। ଘେଞ୍ଚ ତ ହାତରୁ ଖାଇ ଘୋଡ଼ା ଆଗରେ ନାଚିବା କଥା। ଆଜି କାଲି ଯୋଉ କମ୍ପିଟିଟିଭ୍ ଯୁଗ, ଟେଣ୍ଡର୍ ନବୁ କୋଡ଼ିଏ ପଚିଶ୍ ପରସେଣ୍ଟ୍ କମ୍‌ରେ। ସବୁ ସ୍ତରରେ ପଇସା ଦେଇ ଦେଇ ନସ୍ୟାନ୍ତ। କେମିତି ଚଳିବ ? କେତେ ଦିନ ଚଳିବ ? ସେ ତ କେବଳ ଆପଣଙ୍କର ଏସ୍. ଡ଼ି. ଓ ନୁହନ୍ତି, ସେ ଆପଣଙ୍କ ବନ୍ଧୁ ବାନ୍ଧବ। ଆପଣଙ୍କର ମନ୍ତ୍ରୀଙ୍କ ସହିତ ସମ୍ପର୍କ ଆମେ ଜାଣୁ। କିନ୍ତୁ କ'ଣ କରିବା ? ଆପଣ ଟିକେ ବୁଝାନ୍ତୁ, ସାର୍ !

କ'ଣ ବା ବୁଝେଇବେ ଅନୁପମ ? ସେ କ'ଣ ବୁଝେଇ ନାହାନ୍ତି ?

ଅନୁପମ ସମାଧାନ କରି ନେଉଥିଲେ ଗ୍ରେଟ ଗ୍ରେଟ ସମାସ୍ୟାର। ଏଠି କଷ୍ଟ ପାଉଛନ୍ତି ? ଆଚ୍ଛା ହଉ ! ଅନୁଗୁଳରେ ଏଇ କାମଟା କରନ୍ତୁ। ମୁଁ ବୁଝିବି। ହଉ ହଉ ! ଆପଣଙ୍କୁ କବ୍‌ରେ କିଛି କାମ ଦେଇ ଦେଉଛୁ। ଏଫ୍. ଡ଼ି. ଆର. ଆସୁ ଆପଣଙ୍କ କଥା ବୁଝିବା।

କିନ୍ତୁ ଦେଖନ୍ତୁ ! ସେ ନୀତିବାନ୍ ଲୋକ। ଯେମିତି କହୁଛନ୍ତି, ତାଙ୍କ କଥା ଅନୁସାରେ କାମ କରିଯା'ନ୍ତୁ।

ହଉ ସାର୍ ! ହଉ ସାର୍ !

ଗ୍ରେଟ ଗ୍ରେଟ ବା ମଧ୍ୟମ ଧରଣର ଠିକାଦାର ମାନଙ୍କର ଏମସ୍ୟା ତ ଅନୁପମ ନିଜ ମୁଣ୍ଡକୁ ନେଇ ଯାଇ ପାରିଲେ। ଏଣେ ସୁମନ୍ତ ଭାବୁଥିଲେ, ସେ ସଚ୍ଚୋଟ ଭାବେ ଠିକ୍ ଠିକ୍ କାମ ତୁଲେଇ ପାରୁଛନ୍ତି। କେହି ଠକ ପାରୁ ନାହାନ୍ତି।

କାନ୍ତୁ···ଧଡ଼େ କାନ୍ତଲାଲ୍ ଆସି ପହଞ୍ଚିଲେ ସନ୍ଧ୍ୟା ସନ୍ଧ୍ୟା, ଅନୁପମଙ୍କ ଘରେ । କାନ୍ତଲାଲ୍ ପ୍ରବଳ ପରାକ୍ରମୀ କଣ୍ଟ୍ରାକ୍ଟର, ମୁମନ୍ତ୍ରଙ୍କ ଅଣ୍ଡରରେ ସେ ଛଅଟା କରୁଥିଲେ "ପୋଡାନାଳା" କ୍ଷୁଦ୍ର ଜଳସେଚନ ଯୋଜନା ।

କାନ୍ତଲାଲ୍ ପାଲସ୍ ଟିକ୍ କାଠ ପରି ଚକ୍‌କଣ ମୁହଁରୁ ଝାଳ ଝରିଯାଉଥିଲା । ସୁନା ଫ୍ରେମ୍‌ର ଚଷମା ଖସି ପଡୁଥିଲା ବାରମ୍ବାର ।

ଅନୁପମ ଜାଣନ୍ତି, କାନ୍ତଲାଲ୍ କୋଉଠିକି ଯାଆନ୍ତି ନାହିଁ । ଚିଫ୍ ଇଞ୍ଜିନିୟର ଯେତେଥର ମୁମନ୍ତ୍ରଙ୍କର ଏଇ କାମ ଦେଖିବାକୁ ଆସିଛନ୍ତି, କାନ୍ତଲାଲ୍ ଘା'ଠାରୁ ଆହୁରି କମ୍ ଥର ସାଇଟ୍ ଉପରକୁ ଯାଆନ୍ତି । ଓଡ଼ିଶା ସାରା କୋଉଠି କେତେ କାମ ବଛେଇ ହୋଇ ପଡ଼ିଛି, ତାଙ୍କୁ ଫୁରୁସତ୍ କାହିଁ ? କାନ୍ତଲାଲ୍‌ଙ୍କ ନାଁ ବହୁ ସମୟରେ ଖବର କାଗଜରେ ବାହାରେ । ଅମୁକ ମନ୍ଦିରକୁ ଏତେ ଟଙ୍କା ଦାନ ଦେଲେ, ଆଜ ଫ୍ଲେ ଟୁର୍ଣ୍ଣାମେଣ୍ଟ ଉଦ୍‌ଘାଟନ କଲେ, କାଲି ସେଠି ମୁଖ୍ୟ ଅତିଥି, ପାର୍ଟି କାମରେ ଦିଲ୍ଲୀ ଯାଇଛନ୍ତି, ଇତ୍ୟାଦି ଇତ୍ୟାଦି । ତାଙ୍କ ଅଧସ୍ତନମାନେ କାମ ଦାମ କଥା ବୁଝନ୍ତି ।

ତେବେ କାନ୍ତଲାଲ୍ କାହିଁକି ଆସିଲେ ଅନୁପମଙ୍କ ଘରକୁ ? ଫୋନ୍ ତ କରି ପାରିଥା'ନ୍ତେ !

ଗାଡ଼ିରୁ ଓହ୍ଲେଇ ଲସର ପସର ହୋଇ ପାହାଚ ଚଢ଼ୁ ଚଢ଼ୁ କାନ୍ତଲାଲ୍, "ନମସ୍କାର ସାର୍ ! ଆରେ ହୋଃ ! ଅନ୍ଦର ଲେ ଆଓ ।"

"କ'ଣ ହୋଇଛି କାନ୍ତଲାଲ୍ ବାବୁ ? ଆପଣ ଏମିତି ହଠାତ୍ ? କିଛି ଦରକାର ଥିଲେ ଫୋନ୍‌ଟାଏ କରି ଦେଇଥା'ନ୍ତେ !" ଅନୁପମ ସଚେତନ ହୋଇ ପଡ଼ିଲେ ।

କେତେଟା ଫଳଝୁଡ଼ି, ମିଠା ଝୁଡ଼ି ବୁହା ହୋଇ ଆସିଲା ।

କାନ୍ତଲାଲ ଖାଲି ହାତରେ କୋଉଠିକି ଯାଆନ୍ତି ନାହିଁ । ମୁଖ୍ୟମନ୍ତ୍ରୀ, ପୂର୍ତ୍ତମନ୍ତ୍ରୀଙ୍କର ଝୁବ୍ ନିକଟ ଲୋକ ହେଲେ ବି ପାର୍ଟିକୁ ଲକ୍ଷ ଲକ୍ଷ ଟଙ୍କା ଚାନ୍ଦା ଦେଉଥିଲେ ବି, ସେ କେବେ କୋଉ ଅଫିସର୍‌ଙ୍କୁ ଅସମ୍ମାନ କରନ୍ତି ନାହିଁ । ଠିକାଦାରୀ କୋଡ୍ ଅଫ୍ କଣ୍ଡକ୍ଟ ସେ ଅକ୍ଷରେ ଅକ୍ଷରେ ପାଳନ କରନ୍ତି ।

"ଆପଣଙ୍କ ସାଙ୍ଗରେ କେବେଠୁ ଦେଖା ହୋଇନି ସାର୍ ! ଆସିଗଲି···ଟିକେ ପେ ମାଇଁ ଗାର୍ଡ୍ସ ।"

ଅଳ୍ପ କିଛି କଥାବାର୍ତ୍ତା ପରେ କାନ୍ତିଲାଲ୍ କିନ୍ତୁ ଠିକ୍ କଥାଟା ଉପରକୁ ଆସିଲେ । "ଏଇ ସାର୍ ! ଆପଣଙ୍କ ଏସ୍. ଡି. ଓ. କାମାକ୍ଷାନଗର ! କ'ଣ କରିବା ?

"କ'ଣ ହେଲା ?"

"ନାଁ...ନାଁ...ସେମିତି କିଛି ନାହିଁ ! ଆପଣଙ୍କ ରିଲେସନ୍ ତ ! କଥାଟା କ'ଣ କି ସାର୍...ଏମିତି ଇଞ୍ଜିନିୟର୍ ଷ୍ଟେଟ୍ ପି. ଡବ୍ଲ୍ୟୁ. ଡ଼ି.ରେ ନାହାନ୍ତି । ମୁଁ ତ ଓଡ଼ିଶା ସାରା ଦେଖୁଛି ! ଯାଏ ନାହିଁ ପିନା କୋଉଠିକି, ମାନେ ଯାଇ ପାରେ ନାହିଁ, କିନ୍ତୁ ସମସ୍ତଙ୍କ କଥା ଜାଣେ ।

ଆଉଟ୍ ଆଣ୍ଡ୍ ଆଉଟ୍ ଅନେଷ୍ଟ !"

କାନ୍ତିଲାଲ୍ ହସିଲେ, "ଗୁ' କପେ ବି ଖାଉ ନାହାନ୍ତି ସାଇଟ୍‌ରେ ସାର୍ ! ଷ୍ଟେସନରେ ରହିବାର ହେଲେ ଏସ୍.ଓ.ଙ୍କ ଘରେ ପିନା ଖାଇବେ, ହେଲେ ଆମ କ୍ୟାମ୍ପ୍‌ରେ ନୁହେଁ । ଅନ୍ୟ କଥା ଛାଡ଼ନ୍ତୁ ।

ଖାଲି ସଚ୍ଚୋଟ୍ ନୁହେଁ ସାର୍ ! ସ୍ୱେ' ପର୍‌ସନ୍ ଉଇଥ୍ ଭେରି ହେଲ୍‌ଦି ସେଲ୍‌ଫ୍ ଏଷ୍ଟିମ୍ । କାହାନ୍ତି ଏମିତି ଇଞ୍ଜିନିୟର ? ସତରେ ସାର୍ ! ମୋ' ମନରେ ଅଦ୍ଭୁତ ସମ୍ମାନ ଆସି ଯାଉଛି ତାଙ୍କ ପ୍ରତି ।

କିନ୍ତୁ..."

"କ'ଣ କିନ୍ତୁ କାନ୍ତିଲାଲ୍ ବାବୁ ?"

"ଆମ ପାଇଁ ତ ବିପଦ ସାର୍ !"

"କ'ଣ ହେଲା ?"

"ମୋ'ର ଦି' ଲକ୍ଷ ଟଙ୍କା ବାଏଁ ବାଏଁ ମାଡ଼ ଖାଇ ଯାଉଛି ।"

"କେମିତି ?"

"ଆପଣ ତ ଜାଣନ୍ତି ! ମୁଁ ସେମିତି ବିଶେଷ ଠକେ ନାହିଁ କାମ ଉପରେ ! ମୋ'ର ଲୋକମାନଙ୍କୁ ସବୁବେଳେ ଇନ୍‌ଷ୍ଟ୍ରକ୍‌ସନ୍, ଅଫିସର ଯେମିତି କହିବେ ସେମିତି କାମ କରିବ । ମୋ' ଯାଏ କଥା ଆସିବା ଉଚିତ୍ ନୁହେଁ ।

କାମ ଠିକ୍ କଅନ୍ତୁ ! କିନ୍ତୁ ମୋର ଯୋଉଠି ଯାହା ପ୍ରାପ୍ୟ ମୁଁ ନ ପାଇଲେ, ଠିକାଦାରୀ କରୁଛି କାହିଁକି ?

"କହନ୍ତୁ..."

"ଆପଣ ତ "ପୋଡାନାଳା"ର ବରୋଏରିଆ ବଦଳେଇ ଦେଲେ ମାଟି ଠିକ୍ ମିଳିଲା ନାହିଁ ବୋଲି ! ହେଲା ଏବେ ! ମାନୁଛୁ କାମ ହେଇ ନ ଥିଲା ! କିନ୍ତୁ ସେଇଟା ତ ଆପଣଙ୍କ ମୋ' ଭିତରର କଥା ! ମୁଁ ଗୋଟାଏ କ୍ଲେମ୍ ନେବାକୁ ଚାହେଁ···ସାଗ ବରୋ ଏରିଆ ଷ୍ଟ୍ରିପିଙ୍ଗ୍ ହେଇ ସାରିଥିଲା, ଆପଣ ବଦଳେଇ ଦେଲେ । ପୁଣି ନୂଆ ବରୋ ଏରିଆରେ ଷ୍ଟ୍ରିପିଙ୍ଗ୍ କରିବାକୁ ପଡ଼ିଲା । ଖାଲି ନ' ଇଞ୍ଚ ମାଟି କାମ ହିସାବରେ ଦେଇ ଦିଅନ୍ତୁ ନାଁ !

ସେଠି ଜଳାଟା ସିନା ! କିନ୍ତୁ ଶୁଖିଲା ତ ! ଆପଣ କମ୍ପ୍ୟାକ୍ସନ୍ ପାଇଁ ପାଣିର କ୍ୟାରେଜ୍ ଦେବେ ନା ?

ଛଅ ଶହ ଲେବର୍ ଆଣିଲି ଟ୍ରକ୍‌ରେ ବୁହାଇ । ଆପଣଙ୍କ ବରୋ ଏରିଆ ଠିକଣା ହେଇ ପାରିଲାନି । ମାଟି ପଡ଼ି ପାରିଲାନି । ସେମାନେ ବସି ରହିଲେ ମାସେ କାଳ । ତାଙ୍କ ଖାଇବା ପିଇବା ଖର୍ଚ୍ଚ କିଏ ଦେବ ସାର ? କେତେ ଲାଭ ପାଇବି ଯେ··ଏତେ ମୂଲିଆଙ୍କର ମାସେ କାଳ ଖର୍ଚ୍ଚ ମୁଁ ତୁଲେଇବି ?"

କାନ୍ତିଲାଲ୍ ହସିଲେ "କ'ଣ ସାର୍ ଆପଣଙ୍କୁ ବୁଝେଇବି ? ସବୁ ତ ନେଇ ଯିବେନି ଏକା ଏକା ଘରକୁ ! ଆପଣମାନଙ୍କ ସମସ୍ତଙ୍କ ଭାଗ ଦବାରେ ମୋ'ର କେବେ ହେଳା ହେଇଛି ? କିଛି କମ୍ପ୍ଲେନ୍ ଅଛି ସାର୍ ମୋ' ବିରୁଦ୍ଧରେ ?

"ଆରେଃ···ନାଁ·· ନାଁ··· "

"ଭାବିଲି ଏସ୍.ଡ଼ି.ଓ. ପିଲା ଲୋକ । ନୂଆ ଜଏନ୍ କରୁଛି । ଅଳ୍ପ ହେଲେ ସିନା ନଉନି । ପର୍ସେଣ୍ଟେଜ୍ ନଉନି ! ଦେଇ ଦିଏ ବେଶ୍ କିଛି ମୋଟା ଆକାରରେ ! ଦେଇଦିଏ ପଚିଶ ହଜାର୍ । କାର୍ଟାଏ କିଣନ୍ତୁ !

ଆମର ତ ସବୁ ସିକ୍ରେଟ୍ ସାର ! ଏ କାନ ସେ କାନ ହେବନି ! ଆପଣଙ୍କ କଥା ଏସ୍.ଡି.ଓ. ଜାଣିବେନି । ଏସ୍.ଡ଼ି.ଓ. କଥା ଆପଣ ଜାଣିବେନି ।

ଆଉ ଦେଇଚୁ ବୋଲି ଆମେ ଯେ ଖରାପ କାମ କରିବୁ, ତା' ବି ନୁହେଁ !

କିନ୍ତୁ ସାର୍ ! ବିଜିନେସ୍ ଇଜ୍ ବିଜିନେସ୍ !"

"କରେକ୍ଟ !"

ଆପଣଙ୍କ ଏସ୍.ଡ଼ି.ଓ. ନଟ୍ଗ୍ରେଡ୍ ବନ୍ଧା । ପଇସା ଛୁଇଁଲେ ନା !

ଅଜେସ୍ତୁ ।

କୋଉଠି ଏସ୍.ଡ଼ି.ଓ. ଚେକ୍ ମେଜର୍‌ମେଣ୍ଟ କରନ୍ତି ? କାହାର ବେଳ ଥାଏ ? ମନ ଥାଏ ?

ଚେକ୍‌ମେଜର୍‌ମେଣ୍ଟ ତ ସ୍ୱେ ଶତକଡ଼ା ଶହେ କରୁଛନ୍ତି ! ସୂତାଏ ଅଧିକା ଦେବେ ନାହିଁ । ଗୁଣ୍ଡକୁ । ସବୁ ଇନସିଆଲ୍ ଲେବଲ୍ ନକେ ନେଉଛନ୍ତି । ଲେବଲ୍ ବହି ସହିତ ସେକ୍‌ସନ୍ ସବୁ ଆପଣଙ୍କ ଅଫିସ୍‌କୁ ପଠେଇ ସାରିଲେଣି ।

ଇନସିଆଲ୍ ଲେଭ୍‌ଲ୍‌ରେ ଟିକିଏ ହେରଫେର ନ ହେଲେ କ'ଣ ଆମେ ପାଇବୁ ସାର୍ ?

କିଛି ଭାବିବେ ନାହିଁ ସାର୍ । ଆପଣଙ୍କ ଶିଡ଼ିଉଲ୍ ସ୍ୱାଭିଆବସ୍ଥା ଯେମିତି ଅଶୋଧିତ ହେଇ ନ ଥିଲେ ମୁଁ ମୋଟେ ଆସି ନ ଥା'ନ୍ତି । ଏମିତି ତ ଆପଣ ଜାଣିଛନ୍ତି, ମୋ'ର ଯୋଉଠି କାମ ହୁଏ, ମୋ' ଏସ୍ ଡ଼ି.ଓ., ଏସ୍ ଓ. ମୁଁ ପୋଷ୍ଟିଂ କରେଇ ନିଏ । କିନ୍ତୁ ଏ କେଶରେ ଯାହା ବି କରିଆନ୍ତି, ଶୁଣିଲି ଆପଣଙ୍କ କଳକନ୍‌କୁ ବାହା ହେଉଛନ୍ତି । କହିଲି, ନାଁ ! ମହାପାତ୍ର ସାହେବଙ୍କ ସାଙ୍ଗରେ କେବେକାର ସମ୍ପର୍କ । କାମାକ୍ଷାନଗର ଏସ୍.ଡ଼ି.ଓ.କୁ ଛୁଇଁବାକୁ ହବନି ।

ହେଲେ, ଆଉ ପାରୁ ନାହିଁ ସାର୍ !

ଏମିତି ଗୋଟାଏ ସମାଧାନର ସୂତ୍ର ନେଇ ଆପଣଙ୍କ ପାଖକୁ ଆସିଛି, ପଟ୍ଟନାୟକ ସାହେବଙ୍କର ଅସୁବିଧା ହେବ ନି, ଆମର ବି ଅସୁବିଧା ହେବ ନି ।"

ଅନୁପମ ସବୁ ବୁଝି ପାରିଥିଲେ । ତାଙ୍କର ଆଉ କିଛି କହିବାର ନ ଥିଲା । କହିଲେ—

"ହଉ ! କୁହନ୍ତୁ !"

"ସମ୍ବଲପୁର ସବ୍‌ଡ଼ିଭିଜନ୍ ଖାଲି ଅଛି । ଟାଉନ୍ ଯାଗା । ଗାଡ଼ି ଅଛି । ଘର ଅଛି । ସବୁ ସୁବିଧା ଅଛି । ବିଶେଷ କାମ ଦାମ ନାହିଁ । କଣ୍ଟ୍ରାକ୍ଟରମାନଙ୍କ ସାଙ୍ଗରେ ଗଣ୍ଡଗୋଳ ହେବାର ଆଶଙ୍କା ନାହିଁ । ମିଶ୍ର ସାହେବ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର୍ ତ ଆପଣଙ୍କ ସାଙ୍ଗ । ନେଇଯିବ ସେଠିକି ?

କାହିଁ ଏଠି ଢ' ଢ'ଟା ନଈ ସେପଟେ ଅପନ୍ତରାରେ ପଡ଼ି ରହିବେ ? ଯୋଉଠି ରହିଲେ ତ ତାଙ୍କ ପାଇଁ ଏକା କଥା ! କାମ ଥିଲେ ଯାହା, ନ ଥିଲେ ବି ସେଇଆ ।

ଯାହା ଆପଣ କହିବେ ।

ଆପଣ ନ ଶୁଣିଲେ, କିନ୍ତୁ ମୁଁ ତାଙ୍କୁ ଛୁଇଁବିନି ସାର୍ ।"

ଅନୁପମ କହୁଥିଲେ, "ହଁ । ସେଇଆ କର ତୁମେ । ସେଥିରେ ସମସ୍ତଙ୍କର ମଙ୍ଗଳ ।"

( ତିନି )

ଜୟନ୍ତ ମହାପାତ୍ର, ଆଇ. ପି. ଏସ୍. ।

ତାଙ୍କ ବିଷୟରେ ଯିଏ ବି ଯେତେବେଳେ ଅନୁପମଙ୍କୁ ପଚାରନ୍ତି, ଘର କୋଉଠି, ଗାଁ କୋଉଠି, କାହା ପୁଅ, ଭାଇ ଭଉଣୀ କେତେ ? ଏ ସବୁର ପ୍ରଶ୍ନରେ ଅନୁପମ କେବଳ ହସନ୍ତି । କ'ଣ ଦରକାର ? ବୈଷ୍ଣବ ହେଲେ ଯେମିତି ମଣିଷର ଅତୀତର ପରିଚୟ ଦରକାର ପଡ଼େ ନାହିଁ, ସେମିତି ଆଇ.ଏ.ଏସ୍., ଆଇ.ପି.ଏସ୍. ବା ଆଲ୍ଏଡ୍ ହେଲେ ଆଉ କି ପ୍ରୟୋଜନ ତା' ଗାଁ ଗଣ୍ଡା ପରିବାର ବିଷୟରେ ଜାଣିବା ? ସେ ତ ଆଗେଇ ଆସେ, ଅନ୍ୟ ସମସ୍ତେ ରହି ଯାଆନ୍ତି ପଛରେ ।

ଏକମାତ୍ର ପରିଚୟ ସେ ଆଇ.ପି.ଏସ୍. । ଏ. ଏସ୍. ପି. ରାଇରଙ୍ଗପୁର । ଜିଲ୍ଲା ମୟୂରଭଞ୍ଜ ।

ଅନୁପମ ଭାବୁଥିଲେ, ଆଇ. ପି. ଏସ୍. ବର । ରେଖା ଯେମିତି ଝିଅ, ଏ ଉପହାର ସେ ତାଳି ମାରି ନେଇଯିବ ।

କିନ୍ତୁ...କେଜାଣି କାହିଁକି, ରେଖା ମନ ଭିତରେ ଏକ ପ୍ରକାର ବିକଳତା ଘୁରି ଯାଇଥିଲା ।

ସେଦିନ ରାତିର ଘଟଣା ପରେ ପରେ ତ ତା'ର ଇଚ୍ଛା ହୋଇଥିଲା, ଏ ଘରର କାନ୍ଥବାଡ଼ ସେ ବିଧା ମାରି ଭାଙ୍ଗି ଦେବ । ସବୁ କିଛି ଚୁରମାର୍ କରିଦେବ ।

...ସେ ବୟସରେ ବୋଧହୁଏ, ଭଲ ପାଇବାଠୁ ଅହଙ୍କାରଟା ଥାଏ ବେଶୀ ଶକ୍ତିଶାଳୀ ।

ତା' ଗୁହ ଭିତରେ ଯେମିତି କେବଳ ଘୃଣା ଛଡ଼ା ଆଉ କୋଉଥି ପାଇଁ ଯାଗା ନ ଥିଲା ସେଦିନ ।

କିନ୍ତୁ...ଧୀରେ ଧୀରେ ସେ ଅଣ୍ଟା ପଡ଼ି ଆସିଲା । ଉଦାସୀନ ହୋଇଗଲା । ପରସ୍ତ ପରସ୍ତ ହେଇ କେତେ ପରସ୍ତ କୁହୁଡ଼ି ଘୁରିଗଲା ତା'ର ସମସ୍ତ ଆବେଗ, ଉତ୍ତେଜନା ଓ ଉଚ୍ଛ୍ୱାସ ଉପରେ । ଭାବ ପ୍ରବଣତା ଉଭେଇ-ଗଲା ତା'ଠାରୁ ।

ତା'ର ମନେ ହେଲା ସେ ଅବା ତା' ବାକି ଜୀବନଟା ସାରା ଗୋଟାଏ ନିରୁତ୍ତାପ, ନିରୁଦ୍‌ବିଗ୍ନ ଜୀବନ ବିତେଇ ଚାଲିବ ।

କାହିଁକି ଯେ ସୁମନ୍ତ ଗାୟତ୍ରୀକୁ ବାଛିଲେ ତା' ସେ ବୁଝି ପାରୁ ନ ଥିଲା । କ'ଣ ଅଛି ଗାୟତ୍ରୀ ପାଖରେ ? ଉଚ୍ଚତା ଓ ଚେହେରା ବାର ବର୍ଷର ଝିଅଟିଏ ପରି । ପତଳା ସରୁ ସରୁ ହାତଗୋଡ଼ । ବୟସ ତୁଳନାରେ କୌଣସି ଆୟତନରେ ସେ ବଢ଼ି ନାହିଁ ।

···ଏକ ପ୍ରକାର ଅବସାଦ ତାକୁ ଘେରି ରହୁଥିଲା ।

ସେଉଠିକି ବେଳେ ଜୟନ୍ତ ମହାପାତ୍ର ତାକୁ ଦେଖିବାକୁ ଆସିଥିଲା, ଦେଖିଲେ ତ ଲୋକଟାକୁ ମନେ ହେଉଥିଲା, ଯେମିତି ନାରୀମାନଙ୍କ ପ୍ରତି ତା'ର କୌଣସି ସମ୍ମାନ ନାହିଁ । ଏମିତି ଗୋଟାଏ ଚାହାଁଣୀରେ ସେ ରେଖାକୁ ଚାହିଁ ରହୁଥିଲା ଯେ ଆଖି ଦି'ଟା ତା'ର ମୁହଁ ଉପରୁ ତଳକୁ ଖସି ଆସିବା ସଙ୍ଗେ ସଙ୍ଗେ ରେଖାକୁ ଲାଗିଥିଲା ସେ ଅବା ବିବସ୍ତ୍ର ହୋଇ ଯାଉଛି ।

କଳା, କଣ୍ଢିଆ ମୁହଁ । ଦର୍ପିତ ଚାହାଣୀରେ ଥିଲା କିଛିଟା ଔଦ୍ଧତ୍ୟ ।

ଶକ୍ତ ପୁଲିଶିଆ ଚେହେରାରେ ଅବଶ୍ୟ ଗୋଟାଏ ଉତ୍ତେଜକ ଗୋପନ ବ୍ୟକ୍ତିତ୍ୱ, ଗୋଟାଏ ଭିନ୍ନ ମାଧୁର୍ଯ୍ୟ ଥିଲା, ଯାହା ରେଖାକୁ ମୁହୂର୍ତ୍ତକ ପାଇଁ ମନ୍ତ୍ରମୋହିତ କରି ଦେଇଥିଲା ।

ହୁଏତ···ଜୟନ୍ତ ମହାପାତ୍ରର ପୁରୁଷତ୍ୱ ଆଗରେ ଅନୁପମଙ୍କର ସାରା ଘରଟା, ଆଭିଜାତ୍ୟ, ଧନ ସମ୍ପତ୍ତି, ଅହଙ୍କାର ସବୁ କିଛି ଗୌଣ ହୋଇ ଯାଇଥିଲେ ।

ଯେତେବେଳେ ସେମାନେ ଜୟନ୍ତ ଓ ରେଖାଙ୍କୁ ବୈଠକଖାନାରେ ଛାଡ଼ି ଦେଇ କିଛି ସମୟ ପାଇଁ ବାହାରକୁ ଚାଲିଗଲେ, ଜୟନ୍ତ କହିଲେ—

"ଆପଣଙ୍କୁ ଦେଖିବା ସତରେ ମୋ'ର ପ୍ରୟୋଜନ ନ ଥିଲା । ମୁଁ ସବୁ କିଛି ଜାଣିଥିଲି । କେବଳ ଆଖି ପଡ଼ିବା ପରେ ବୁଝିଗଲି ଆପଣ ଗୋଟାଏ ତୋଫାନୀ ଝିଅ ।"

"ମାନେ ?"

"ମାନେ ଆଉ କ'ଣ ?" ସେ ହସି ଉଠିଲେ । "ମୋ'ର ଠିକ୍ ଏମିତି ଝିଅଟାଏ ପ୍ରୟୋଜନ ଥିଲା ।

ଯୌବନର ଏତେକ ବର୍ଷ ଜନକୁ ଆକର୍ଷଣୀୟା କରିବାରେ ଏବଂ ପୁରୁଷ-ମାନଙ୍କୁ ଧରି ରଖିବାର ପ୍ରୟାସରେ କଟେଇଛନ୍ତି ନିଶ୍ଚୟ !

...ମାନେ...ଅଳ୍ପ ଅଳ୍ପ ନରମ ହସ ..ଆଖିର ଆମନ୍ତ୍ରଣ, ଆଖିର ଭାଷା... ଯାହା ଯେ କୌଣସି ଯୁବକକୁ,...ଆପଣଙ୍କ ପାଖକୁ ଟାଣି ହେଇ ଆସିବା ପାଇଁ ଅସ୍ଥିର କରୁଥିବ !

...ସାମାନ୍ୟ ବାଟ ହୁଡ଼ିଗଲେ, ଆପଣ କନ୍ତୁ ତାକୁ କ୍ଷମା ନ ମଗେଇ ଛାଡ଼ିବେ ନାହିଁ ନିଶ୍ଚୟ ?''

ଜୟନ୍ତ ମହାପାତ୍ର ହସି ଦେଲେ, ''ଏବଂ...ମାଫ୍ କରି ଦେବେ ମଧ୍ୟ !''

''କ'ଣ କହିବାକୁ ଚାହୁଁଛନ୍ତି ଆପଣ ?''

''ସୁନ୍ଦରୀ ଝିଅମାନଙ୍କ ପାଇଁ ବିବାହ ପୂର୍ବର ଏଇ ଜୀବନଟା ସବୁଠାରେ ସବୁଠୁ ମଧୁର ! କୋଟେଡ୍ ବାଇ ହ୍ୟାଣ୍ଡସମ୍ ବଏଜ୍ !

ସେମାନଙ୍କର ଫ୍ଲାଟରି...ସୁଇଟ୍ ସିମ୍ପାଥି...ରିଅଲ ଫନ୍ !''

ଜୟନ୍ତ ମହାପାତ୍ରଙ୍କ କଣ୍ଠସ୍ୱର ଅଖାଡ଼ୁଆ ଲାଗୁଥିଲା ।

ରେଖା ଯେତେବେଳେ ଆଖି ଖୋଲି ଚାହିଁଲା, ତାଙ୍କ ଆଖିରେ କପଟ ଏକ ଜଘନ୍ୟ ଆନନ୍ଦ ଫୁଟି ଉଠୁଥିଲା । ଦେଖିଲେ ମନେ ହେଉଥିଲା, କୌଣସି ଝିଅକୁ ଏକୁଟିଆ ପାଖରେ ପାଇ ଗ୍ରାଣ୍ଡ ଦେଲା ପରି ମଣିଷ ଯେ ନୁହଁନ୍ତି ।

''ମୁଁ ଗୋଟାଏ ଭିନ୍ନ ମଣିଷ । ବହୁ କଣ୍ଟକିତ, ଅଶାନ୍ତ ସ୍ମୃତି ଓ ଅନୁଭୂତି ମୋ' ଭିତରେ ଧରି ରଖିଛି ।

କୈଶୋରଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ମୋ' ପାଇଁ କିଛି ବି ସବୁଜ ନ ଥିଲା । ବରଂ ଥିଲା ସବୁ କିଛି ବିପର୍ଯ୍ୟସ୍ତ ।

ତେଣୁ ଆପଣ ଖୋଜୁଥିବା ସ୍ୱପ୍ନ ପ୍ରବଣତା ମୋ' ପରି ଗୋଟାଏ ଆରଣ୍ୟକ ମଣିଷ ପାଖରେ ପାଇବେ ନାହିଁ ।

ମୁଁ ତ ରାଜି ! କୁହନ୍ତୁ ! ଏ ପ୍ରସ୍ତାବରେ ଆପଣ ରାଜି ତ ? ଆପଣ ସୁଖି ହେଇ ପାରିବେ ତ ?''

''ସତ କହୁଛନ୍ତି ? ଆପଣ ମୋ ପରି ଝିଅ ଚାହୁଁଥିଲେ ?''

"ସତ କହୁଛୁ । ମୋ'ର ପସନ୍ଦ କାମିନୀମାନଙ୍କୁ ।"

"କାମିନୀ ?"

"ହଁ ! ପ୍ରକାର ଭେଦରେ ନାରୀମାନେ ଯୋଷା ହୋଇ ପାରନ୍ତି । ହୋଇ ପାରନ୍ତି ପ୍ରମଦା, ଲଲନା, କାମିନୀ ବା ବାମା !"

"ବାଃ ! ଶସଚ' କରିଛନ୍ତି ବୋଧହୁଏ ! କ'ଣ 'କାମିନୀ'ର ଅର୍ଥ ?"

"କାମିନୀ ! କାମନା ଭାବ ଜାଗରଣ କାରିଣୀ !" ଜୟନ୍ତ ମହାପାତ୍ର ହୋ' ହୋ' ହୋଇ ହସି ଉଠିଲା ।

ତା'ର ପ୍ରଚଣ୍ଡ ପୌରୁଷ ରେଖାକୁ ଅସ୍ୱସ୍ତିକର ଲାଗୁଥିଲା । ତା'ଠାରୁ ଯେଉଁ ପ୍ରାଣ ପ୍ରାଚୁର୍ଯ୍ୟ ବିକିରଣ ହେଉଥିଲା, ରେଖା ନେମିନ୍ତ ସେଥିରେ ଆତୁର କ୍ଷୀଣ ଏବଂ ଦୁର୍ବଳ ହୋଇ ପଡ଼ୁଥିଲା । ତା' ହସ, କଥା ଓ କଳା ଚେହେରା, ସବୁ ମିଶି ଭୟଙ୍କର ଲାଗୁଥିଲା ।

ରେଖା ବୋଧହୁଏ ତା' ଜୀବନରେ ଏତେ ଶକ୍ତ ଓ ଧୃଷ୍ଟତା ଥିବା ଆଉ ଗୋଟାଏ ପୁରୁଷ ଦେଖି ନ ଥିଲା ।

କାନ୍ଧ ଓ ହାତର ଟାଣୁଆ ମାଂସପେଶୀ ସବୁ ପୋଷାକ ଭିତରୁ ଫୁଟି ଦିଶୁଥିଲେ ।

ଲାଜରେ ରେଖାର ମୁହଁ ଲାଲ ପଡ଼ିଗଲା ।

ସେ ବିନୟରେ ଆଖି ତୋଳି ଚାହିଁଲା ।

ଠିଆ ହୋଇ ପଡ଼ିଲା ।

ଜୟନ୍ତ ମହାପାତ୍ର ଦେଖୁଥିଲା···ରୌଦ୍ର ଝଲକ ପରି ସେ ସୌନ୍ଦର୍ଯ୍ୟ··· ସେ ଭ୍ରୂ, ସେ କଟି, ସେ ନାସିକା, ଡାଳିମ୍ବ ଦାନ୍ତ, ନାଭିଠାରୁ ଅନେକ ତଳେ··· ବେଶ୍ କିଛି ଦୂରତାରେ ଝୁଲୁଥିବା ଶାଢ଼ୀ···ଓ·········

ଧୀର ମନ୍ଥର ଗତିରେ ସେ ପଚାରିଲା, "କୁହନ୍ତୁ ! ଆପଣ ରାଜି ?"

"ହଁ । ମୁଁ ରାଜି ।"

ତା'ପରେ ବାହାଘର ପକ୍କା ହୋଇ ଯାଇଥିଲା । ରୁନୁ ଭାଉଜ କହୁଥିଲେ, ଭଲ ହେଲା । ତମେ ହେବ ସେ ଘରର ସାମ୍ରାଜ୍ଞୀ । ଶାଶୂ, ଶଶୁର, ଦିଅର, ନଣନ୍ଦ

କାହା କଥା ବୁଝିବାକୁ ପଡ଼ିବ ନାହିଁ । ଜୟନ୍ତ ବାବୁ ଖୁସିବାସିଆ ମଣିଷ । ଫୁର୍ତ୍ତି କରିବା ପାଇଁ ତମୁକୁ ଉପଯୁକ୍ତ ସାଥୀଟିଏ ଏବେ ମିଳିଗଲେ ।

ଜୟନ୍ତ ବାବୁ ମଝିରେ ମଝିରେ ଆସୁଥିଲେ । ଅନନ୍ତ ଯୁଗର କ୍ଷୁଧା ନେଇ ଗୁହିଁ ରହୁଥିଲେ ରେଖାକୁ । ରେଖାର ହସର ଝରଣାରେ ଗାଧୋଇ ପଡ଼ୁଥିଲେ । ରୁନୁ ଭାଉଜଙ୍କ ହାତର ନୁଆ ଡ଼ିସ୍, ଚିଟି ଫ୍ରୁଟି ପୁଡ଼ିଂ ଉଇଥ ଅରେଞ୍ଜ ଫୋମ୍ ସସ୍, କମ୍ବା ବେକ୍‌ଡ଼୍ ପନୀର୍ ଖାଇ ପ୍ରଶଂସା କରୁଥିଲେ ।

କହୁଥିଲେ, ଭାଉଜ ! ମୋ' କଥା କାହିଁକି ପଚାରୁଛନ୍ତି ? ମୋ' ଚଲା-ପଥରେ ନାଁ ଥିଲା ପାନ୍ଥଶାଳା, ନାଁ କିଛି ଗଛ ପତ୍ର ! ଧୁ ଧୁ ବୈଶାଖୀ ଖରାରେ, ଅନ୍ଧାରୁଆ ବର୍ଷାରେ, ହାଡ଼ ଭଙ୍ଗା ଶୀତରେ ଚାଲି ଚାଲି ମୁଁ ପହଞ୍ଚିଛି ଏ ଆଇ.ପି.ଏସ୍. ପଦବୀ ପାଖରେ ।

ରୁନୁ ଭାଉଜ କହୁଥିଲେ, ତା' ହେଲେ ତ ତମେ ସାର୍ଥକ ପଥିକ ! ତା' ଛଡ଼ା···ବାକି ବାଟ ଚାଲିବା ପାଇଁ ଆମେ ପରା ତମକୁ ଜଣେ ମଣିଷ ଦେଉଛୁ । ତା'ର ହାତ ଧରି ଚାଲିବ । ସେଇ ତମର ପାନ୍ଥଶାଳା । ସେଇ ତମର ଛାୟା ପ୍ରଦାୟିନୀ ବୃକ୍ଷ । ଏଥର ତମେ ଦିଗ୍‌ବଳୟର ସୀମାରେଖା ବି ଟପି ଯାଇ ପାରିବ ।

'ସତେ ?'

ଭାଉଜଙ୍କ କଥାରେ ହୋ' ହୋ' ହେଇ ହସୁଥିଲେ ଜୟନ୍ତ ମହାପାତ୍ର ।

ଅଜବ୍ କଥା ସବୁ କହୁଥିଲେ କେବେ କେମିତି ।

···ଶତ୍ରୁଟିଏ ବିନା ଜୀବନ କ'ଣ ପୂର୍ଣ୍ଣ ?

···ବେଳେ ବେଳେ ଏତେ ରିକ୍ତ ଲାଗେ କାହିଁକି ?

···ବହୁ ଚେଷ୍ଟାରେ ବହୁ ପରିଶ୍ରମରେ ପାଇଥିବା ସବୁ କିଛି ତୁଚ୍ଛ ଲାଗେ କାହିଁକି ?

···ମତେ ଯେତେଥର ପୁଣି ଜନ୍ମ ନେଇ ଭୁଲ୍‌ତକ ସୁଧାରି ନବାର ସୁଯୋଗ ଦିଆଯିବ, ସେତେଥର ମୁଁ ସେଇ ଭୁଲ୍ ସବୁ ଆଉ ଥରେ କରିବି ।

ରୁନୁ ଭାଉଜଙ୍କୁ ଜୟନ୍ତଙ୍କ କଥା ଭଲ ଲାଗୁଥିଲା । ଯଦିଓ ସେ ଅଧାରୁ ଅଧିକ ବୁଝିପାରୁ ନ ଥିଲେ, ଜୟନ୍ତ ଲାଗୁଥିଲେ ଖୁବ୍ ଭଲ । ରୁନୁ ଭାଉଜଙ୍କୁ ସମ୍ମାନ ଦେବାରେ ସେ କେବେ ତ୍ରୁଟି କରୁ ନ ଥିଲେ ।

ରେଖା ଯଦି ପଚାରୁଥିଲା, ମତେ କେମିତି ଦେଖିଲେ ଆପଣଙ୍କୁ ଭଲ ଲାଗେ ?

କଷ୍ଟର କହୁଥିଲେ ଦାନ୍ତ ଦି' ପରସ୍ତ ଭିତରେ ତଳ ଓଠକୁ ଘୃଣି ଧରିଥିବ। ମୁହଁରେ ଏକ ଅଜବ୍ ଭଙ୍ଗୀମା। ଅଧା ଓଠରେ ଚତୁର ହସ। ଆଉ ଅଧକରେ ଦାରୁଣ ଯନ୍ତ୍ରଣା।

ଦେଖନ୍ତୁ ଚେଷ୍ଟା !

( ୪ )

କାନ୍ତିଲାଲ୍‌ଙ୍କ ଚେଷ୍ଟାରେ ସୁମନ୍ତଙ୍କର ବଦଳି ହୋଇ ଯାଇଥିଲା ସମ୍ବଲପୁର। ଅନୁପମ ତାଙ୍କ ବନ୍ଧୁ ଶକ୍ତି ମିଶ୍ରଙ୍କୁ ଜଣେଇ ଦେଇଥିଲେ। ସେ ହେବେ ସୁମନ୍ତଙ୍କର କଟାକ୍ଷ ଯନ୍ତ୍ରୀ। ଶକ୍ତି ମିଶ୍ର କହିଥିଲେ, ତମେ ବ୍ୟସ୍ତ ହୁଅନା ଅନୁପମ। ମୁଁ ସବୁ ବୁଝିବି। ଏଠି ବ୍ରୁକ୍‌ସ୍ ହିଲ୍‌ରେ ଭଲ ଘର ଅଛି। ଗାଡ଼ି ଅଛି। ଇଲାକା ବିଶେଷ ନ ଥିଲେ ବି ଅସୁବିଧା ନାହିଁ।

ତମ ଆଡ଼େ ସିନା ସବୁ ଦରଦାମ୍ ହୁ ହୁ ହୋଇ ବଢ଼ି ଗଲାଣି ! ଏଠି କମାଦାର ପାଲରେ ଏବେ ବି ଦି' ଟଙ୍କା କଲେରେ ବଡ଼ ଖଜୁର ମାଛ ମିଳେ। ସଚୋଟ ହେଲେ ବି ଦରମାରେ ଦି' ପ୍ରାଣୀ କୁଟୁମ୍ବ ଚଳି ଯାଇ ପାରିବେ। କିନ୍ତୁ ମୁଁ ଚେଷ୍ଟା କରିବି ତାଙ୍କୁ ଶଗଡ଼ ଗୁଳାରେ ପକେଇବା ପାଇଁ। ଦେଖେ !

ଅନୁପମ ହସିଲେ। କହିଲେ, ମୁଁ ବି ଚାହେଁ ସେ ଏ ଆଦର୍ଶ ଫାଦର୍ଶ ଛାଡ଼ନ୍ତୁ। କଣ୍ଟା ଝଣ୍ଟା ଅରମା ନ ମାଡ଼ି ସେଇ ଗୁଳାରେ ଚାଲୁ। କିନ୍ତୁ ଭାଇ ! ସୋମ-ରସରେ ତାଙ୍କୁ ଯେମିତି ଅଭ୍ୟସ୍ତ ନ କର ! ତମର ଅନୁଗତ ବା ଶରଣାପନ୍ନମାନଙ୍କୁ ଏଇ ଦୀକ୍ଷା ଦବାରେ ତ ତମେ ପାରଙ୍ଗମ !

ଶକ୍ତି ମିଶ୍ର କହିଥିଲେ, ତମ ଭଉଣୀକୁ ଠିକ୍ ମୋ' ଭଉଣୀ ପରି ଭାବିବି ମୁଁ। ନିଶ୍ଚିନ୍ତ ରୁହ।

କାନ୍ତିଲାଲ୍ ବହୁତ ଅନୁରୋଧ କରିଥିଲେ, ସାର୍ ! ମୋ' କାର, ଆପଣଙ୍କୁ ନେଇ ସମ୍ବଲପୁରରେ ଛାଡ଼ି ଦେବ। କିଛି ଅଧିକା ଖର୍ଚ୍ଚ କରୁନି ମୁଁ ଆପଣଙ୍କ ପାଇଁ। ଏମିତି ତ ଗାଡ଼ି ସବୁବେଳେ, ସବୁ ଆଡ଼େ ଧାଉଁଛି। କୋଉ ଅଫିସରଙ୍କର ସମ୍ବନ୍ଧଙ୍କ ପୁତୁରାର ଶଳାକୁ ନେଇ ଦରକାର ହେଲେ ଶହ ଶହ କିଲୋମିଟର୍ ଯାଉଛି। ଏଇ ତ କାଲି ଆପଣଙ୍କ ସମ୍ବଲପୁର ଏସ୍. ଇ.ଙ୍କ ମେମ୍‌ସାହେବଙ୍କ ଗାଁର ଲୋକମାନଙ୍କୁ ନେଇ ଯାଇଥିଲା।

ପେଟ୍ରୋଲ୍ ଲିଟର୍ ଅଶୀ ପଇସା। କୋଉ ବଡ଼ କଥା ? ଏଇଟା ଆମର ଧର୍ମ। ଆମେ ସହ୍ୟ କରି ପାରିବୁନି, ଆମ ଅଫିସର୍ ବସ୍‌ରେ ଯିବେ। ଏକାକିଆ ଆପଣଙ୍କ କଥା ଅଲଗା ସାର୍ ! କିନ୍ତୁ ପିଲାଛୁଆ !

ମିଲୁଥିଲା ଏ ଯାଏ ହେଇ ନାହାଁନ୍ତି କାନ୍ତିଲାଲ୍ ବାବୁ !

ନାଇଁ ସାର୍...ମେମ୍ ସାହେବଙ୍କ କଥା !

ମୋ' ସ୍ତ୍ରୀ ତ ମେମ୍ ସାହେବ ନୁହଁନ୍ତି । ତା' ଛଡ଼ା ଯୋଉଦିନ ଯାଏ ମୋ'ର କାର୍ ନାହିଁ, ଯାଆନ୍ତୁ ବସ୍‌ରେ । ସେଥିରେ ଲଜ୍ଜା କଣ ? ଅସୁବିଧା କ'ଣ ?

ଆପଣଙ୍କ ଇଚ୍ଛା ! ମୋ'ର କିନ୍ତୁ ମନରେ ଦୁଃଖ ।

ସୁମନ୍ତ ହାତ ଥୋଇଲେ କାନ୍ତିଲାଲ୍‌ଙ୍କ ହାତ ଉପରେ । ଭଲ ! ମୋ'ର ଗୋଟାଏ ମାତ୍ର ଅଛି । ଜୀବନରେ କିଛି ଗୋଟାଏ ଖୋଜୁଛି । ନିର୍ଲିପ୍ତ ରହିବାକୁ ଚେଷ୍ଟା କରୁଛି । ମତେ ଟିକେ ସାହାଯ୍ୟ କରିବେ ନାହିଁ ?

କାନ୍ତିଲାଲ୍ କିଛି ବୁଝିପାରି ନ ଥିଲେ । ଫେରି ଯାଇଥିଲେ ।

ରୁନୁ କିନ୍ତୁ କହିଲେ, ଆମେ ତ କଣ୍ଟ୍ରାକ୍ଟର ନୋହୁଁ । ଆମ କାର୍‌ରେ ଯିବାରେ ତମର ଅସୁବିଧା କ'ଣ ? ହେଇଓ ଯୋଗୀ ପୁରୁଷ । ଏତେ ସବୁ ମାତ୍ର ନିସ୍ପୃହ ଥିଲ ତ ମୋଟେ ବାହା ହେଇ ନ ଥା'ନ୍ତ । କିଏ କହୁଥିଲା ସଂସାର କରିବାକୁ ?

ରୁନୁ ଭଉଜଙ୍କର ସୁମନ୍ତଙ୍କ ପାଇଁ ସବୁବେଳେ ସଖୀ ସଖୀ ଭାବ ।

ସୁମନ୍ତ ହସିଲେ । ତମ ଗାଡ଼ିରେ ତ କେତେଥର ବସିଛି ତା'ର ହିସାବ ନାହିଁ । ଏଥରକ ବଦଳାରେ ଯାଉଛି । ସରକାର ଟି. ଏ. ଦେବେ । ବସ୍‌ରେ ଯାଇଥାଏ । ମୁଁ ତ ବସ୍‌ରେ ବସିବାରେ ଅଭ୍ୟସ୍ତ । ଗାୟତ୍ରୀ ବି ନିଶ୍ଚୟ ଅଭ୍ୟସ୍ତ ହୋଇଥିବ ।

ସୁମନ୍ତ ଯାହା ବୁଝିଥିବେ ସେଇଆ ।

ତେବେ ଟ୍ରାନ୍‌ଜିଟ୍‌ରୁ ପାଞ୍ଚ ଦିନ ଅନୁପମଙ୍କ ଘରେ କଟେଇବାରେ ସୁମନ୍ତଙ୍କର କିଛି ଆପତ୍ତି ନ ଥିଲା । ରୁନୁ ଭଉଜ ଛ' ତୁଣ ନ' ଭଜା କରି ପରଶୁଥିଲେ ।

ଅନେକ ଦିନ ପରେ ରେଖା ସେଥର ଦେଖିଥିଲା ସୁମନ୍ତଙ୍କୁ ।

ଗାୟତ୍ରୀ ଓ ସୁମନ୍ତଙ୍କୁ ଏକାଠି ଦେଖି ତାକୁ ଅସ୍ୱସ୍ତି କର ଲାଗୁଥିଲା । ଦୁଷ୍ଟ ଝିଅଟିଏଠାରୁ ତା'ର ମନଲାଖି କଣ୍ଢେଇଟି ଛଡ଼େଇ ନେଲେ ଯେମିତି ହେଇଥାଏ ତା' ମନର ଅବସ୍ଥା ଠିକ୍ ସେମିତି ।

ସୁମନ୍ତ କିନ୍ତୁ ଥିଲେ ସହଜ, ସରଳ, ନିର୍ବିକାର ! ଟ୍ରାଉଜର୍ ପଞ୍ଜାବୀ ପିନ୍ଧି ସେ ଯେତେବେଳେ ଘର ଭିତରେ ଏପଟ ସେପଟ ହେଉଥିଲେ, ରେଖାର ମନେ

ହୋଇଥିଲା ଏଇ କଷ୍ଟ ଦାନ ଭିତରେ ସେ ଯେମିତ କଷ୍ଟଟା ଭିନ୍ନ ମଣିଷ ହୋଇ ଯାଇଛନ୍ତି । 'ମୁଁ ସୁମନ୍ତ ପଟ୍ଟନାୟକ', ପ୍ରଥମ ସାକ୍ଷାତର ସେ କଣ୍ଠସ୍ୱର ଆଉ ତାଙ୍କ ପାଖରେ ନାହିଁ । ସେ ସୁମନ୍ତ ସ୍ୱପ୍ନାଣୀ ନାହିଁ । ନାହିଁ ସେ ବେପରୁଆ ଭାବ, ଯାହା ଯେ କୌଣସି ଝିଅକୁ ଭଲ ପାଇବାର ବ୍ୟାକୁଳତା ବା ହତାଶା ଭିତରକୁ ଠେଲି ନେଇ ପାରବ ।

ଆଉ ଟିକଏ ପଡଲା, ଉନ୍ମାଦ ହୋଇ ଯାଇଛନ୍ତି । ସ୍ଥିରତା ଓ ଆତ୍ମ ବିଶ୍ୱାସ, ସେ ବ୍ୟକ୍ତିତ୍ୱରେ ଯେମିତ ଆହୁରି ବଢ଼ି ଯାଇଛି ।

କିନ୍ତୁ ··ସୁମନ୍ତ ଯେ ଆସିଛନ୍ତି !

ସେ ଚାଲିଯିବେ ସମ୍ବଲପୁର । ଦୁଇ ମାସ ପରେ ରେଖାର ବାହାଘର । ସେ ବି ବାହାହୋଇ ଚାଲିଯିବ ରାଇରଙ୍ଗପୁର । ପୁଣି କେବେ ଦେଖା ହେବ କେଜାଣି ?

ଏବେ·ବି ସୁମନ୍ତଙ୍କ କଣ୍ଠସ୍ୱର ତା' କାନରେ ବାଜିଲେ ସେ ଚହଲି ଉଠେ ! ସେ ଠିକ୍ ପଢ଼ି ପାରେ ସୁମନ୍ତଙ୍କ ଆଖିରେ···ସୁମନ୍ତ ତାକୁ ତଥାପି ସାଇତ ରଖିଛନ୍ତି ମନର ଗୋପନରେ ।

ରେଖା ଛପି ଛପି ଦେଖୁଥିଲା । ଗାୟତ୍ରୀ ଅପା ଅନ୍ତଃସତ୍ତ୍ୱା । ଭାବି ମାତୃତ୍ୱର ଅହଙ୍କାର ଯେମିତ ତା' ସ୍ୱପ୍ନାଣୀରେ, ହାବଭାବରେ ଫୁଟି ଉଠୁଛି । କିନ୍ତୁ ସେ କ ମା' ହେବ ? ଏତେ ପତଳା କ୍ଷୀଣ ଶରୀରରେ କେମିତ ସେ ଧାରଣ କରି ପାରୁଛି ସୁମନ୍ତଙ୍କ ସନ୍ତାନ ?

···ପରଦା ଫାଙ୍କରେ ଦଶୁଛି । ସୁମନ୍ତଙ୍କ ଦେହକୁ ଲାଗି ସୋଫା ଉପରେ ଗାୟତ୍ରୀ ଅପା ବସିଛି । ହାତରେ ଉଲ୍ ଗୁଳାଟାଏ । ଭାବି ସନ୍ତାନ ପାଇଁ ବୋଧହୁଏ ବୁଣି ଚାଲିଛି । କ···ସୁମନ୍ତଙ୍କ ପାଇଁ ?

ଚଳପ୍ରଚଳ ହୁଏ ସୁମନ୍ତଙ୍କ ଗ୍ଲାଇ ପନ୍ । ହାତକୁ ରୁମାଲ ବଢ଼େଇ ଦିଏ । ହାତ ପୋଛିବା ପାଇଁ ତଉଲିଆ । ଆଖିରେ, ଓଠରେ ଖୋଲାଖୋଲି ପ୍ରଶଂସା କରେ ସୁମନ୍ତଙ୍କୁ । କେମିତ ଲାଜ ଲାଗୁ ନାହିଁ କେଜାଣି ?

ଯୋଉଦିନ, ବାହାଘର ପରେ ସେମାନେ ପ୍ରଥମ କରି ଆସିଥିଲେ ଏ ଘରକୁ, ରେଖା ଆପେ ଆପେ ଆସି ନ ଥିଲା । ତାକୁ ଧରି ଆଣିଥିଲା ଗାୟତ୍ରୀ । ହେଇ ! ତମ ଶାଳୀ ସଭ୍ୟ ! ଆରେଃ ! ସେମିତ କ'ଣ ? ଟିକଏ ଛୁଅଁ ।

ଛୁଅଁ···

ମନେ ପକେଇ ଦେବ କି ସୁମନ୍ତଙ୍କୁ···

"ଏବେ ବି ମୋ' ଗୃହ ଭିତରେ ତମର ବାସ୍ନା ଲାଗିଛି ?"

ମନେ ପକେଇ ଦେବ କି ?

ଜହ୍ନରାତି·· ହ୍ୱବସନା ନାରୀର ଅଙ୍ଗବାସ ପରି ··ମୁକୁଳିତ, ସ୍ନିଗ୍ଧ···ଗୃହ ଉପରେ ତମେ ତମର କବିତା ଆବୃତ୍ତି କରୁଥିଲ । କ'ଣ ଥିଲା ତ ସେ କବିତାରେ ?

·· ହଁ ! ଗୁଇଡ଼ଙ୍କା, ଅଙ୍କବଙ୍କା ଗାଉଁଲି ଚଲିବାଟର ନାରୀ । ଭିରୁ କଳସୀ । ମ୍ଳାନସ୍ମିତ କଟି ।

···ଯାବତୀୟ ବାଜେ କଥା ସବୁ !

ମୁଁ ଠିକ୍ ଶୁଣିଛି···

ବଉଳର ଗନ୍ଧରେ, ଝଂସ ପଦ୍ମର ମର୍ମର ଧ୍ୱନିରେ, ଜହ୍ନ୍ ମନ୍ ବର୍ଷା ରାତିରେ ତମ ଭିତରୁ ଶୁଭେ ଗୋଟାଏ ଅବରୁଦ୍ଧ ନୀରବ କାନ୍ଦଣା । ତମ ଆଖିକୁ ଚାହିଁଲେ କେମିତି କେଜାଣି ଶୁଭିଯାଏ ସେ ଧ୍ୱନି । ବାରିହୁଏ ସେ ବ୍ୟାକୁଳତା ।

···ମୁଁ ତ ସତରେ ସମ୍ମୋହିତ ହୋଇଯାଏ ।

କିନ୍ତୁ ଏମିତି କଣ୍ଟୁଟିଆ ଗନ୍ଧରିଆ କଥା ସବୁ ମତେ କ'ଣ କେବେ ଭଲ ଲାଗେ ?

ମତେ କ'ଣ ଭଲ ଲାଗେ ଶେର୍ ? ଶାୟରୀମାନେ ବରଂ ଲାଗନ୍ତି ସ୍ତୈଣ ପରି ।

ସେ ଅଶାନ୍ତ ବର୍ଷା, ସେ ଅତୃପ୍ତ ମର୍ମର ମୋ'ର ସ୍ନାୟୁରେ ବୋହିଯାଏ ଏକ ପ୍ରମତ୍ତ ଆବେଗ ପରି ! ମୁଁ ଅବ୍ୟବସ୍ଥିତ ହୋଇ ପଡ଼େ ।

···ମାନେ କ'ଣ ହୁଏ ଆଜି ଏ ସବୁ କହିବାରେ, ବୁଝେଇବାରେ ?

ରେଖା ସିନା କହି ଦେଇଥିଲା, "ମୁଁ ଆପଣଙ୍କୁ ବଞ୍ଚିଥିବା ପର୍ଯ୍ୟନ୍ତ ଘୃଣା କରୁଥିବି !" କିନ୍ତୁ ତା' କ'ଣ ସତ୍ୟ ? ସେ କ'ଣ ସତରେ ସୁମନ୍ତଙ୍କୁ ଘୃଣା କରି ପାରିବ ?

ଏକାକିଆ କୋଉଠି କେତେବେଳେ ଆଖି ପଡ଼ିଗଲେ, ସେ ତ ଠିକ୍ ପଢ଼ି ପାରିଛି ଗୋଟାଏ ସଚେତ ଆବେଗ···କିଛି ଇଙ୍ଗିତ ! ···ଗାୟତ୍ରୀ ଅପା ପାଇଁ ସ୍ୱାମୀତ୍ୱର ମମତାର ତତ୍ତ୍ୱବୋଧ ସେ ପଟେ ସୁମନ୍ତଙ୍କର ତଥାପି ଅଛି ଅନେକ ବ୍ୟାକୁଳତା, ଅନେକ ଉତ୍ତେଜନା···ରେଖା ପାଇଁ ।

...ଅଃ...ଗାୟତ୍ରୀ ଅପା କ'ଣ ବା ଜାଣେ ଗୋଟାଏ ପୁରୁଷକୁ ଭଲ ପାଇବାର ଉଚ୍ଛ୍ୱାସ ?

କ'ଣ ବା ସେ ବୁଝେ ପୁରୁଷର ଆକର୍ଷଣ ? ଅପୂର୍ବ ଗୋପନ ପ୍ରାର୍ଥନା ? ଜୀବନର ଶକ୍ତିଶାଳୀ ସୌନ୍ଦର୍ଯ୍ୟ ?

ପ୍ରତିଟି ରାତିରେ ଗେଷ୍ଟ ରୁମ୍‌କୁ ଯିବା ପୂର୍ବରୁ ରେଖା ଦେଖେ—ଗାୟତ୍ରୀ ଅପା ମୁହଁଟା ଲାଲ୍ ପଡ଼ିଯାଏ । ଆଖି ନୁଆଁଇ ଡର ଡର ହୋଇ ସେ ରୁମ୍ ଭିତରକୁ ପଶିଯାଏ । ତା' ମୁହଁରେ ସଙ୍କୋଚ ଏବଂ ଆନନ୍ଦର ଗୋଟାଏ ଫେଣ୍ଟା ଫେଣ୍ଟି ଭାବ ।

ବାହାର ବାରଣ୍ଡାର ଅଧା ଅନ୍ଧାର ଭିତରେ, ବନ୍ଦ କବାଟ ଆଡ଼େ ଚାହିଁ ରହି ରେଖା ନିଜକୁ ପରିତ୍ୟକ୍ତ, ନିର୍ଜନ ମନେ କରେ । କେବଳ ସେ କବାଟଟା ନୁହେଁ, ତା' ପାଇଁ ଯେମିତି ଦୁନିଆଁର ସବୁ କିଛି ବନ୍ଦ ହୋଇଯାଏ ଆଖି ଆଗରେ ।

ସୁମନ୍ତଙ୍କ ଉପସ୍ଥିତି କ'ଣ ରେଖା ପାଇଁ ଗୋଟାଏ ନିଦା କାନ୍ଥ ? ସେଇ କାନ୍ଥ ପଛରେ...ବନ୍ଦିନୀ ହୋଇ...ଛଟପଟ ହୋଇ...ସେ କ'ଣ ନିଃଶେଷ ହୋଇଯିବ ?

ନାଁ !

ଏ ପ୍ରତିବନ୍ଧକ ତାକୁ ଭାଙ୍ଗି ଦେବାକୁ ପଡ଼ିବ । ନ ହେଲେ ସେ ଯେ ତିଳ ତିଳ ହୋଇ ଧ୍ୱଂସ ପାଇଯିବ !

...ଝରକାର ଗ୍ରିଲ୍‌କୁ ଧରି ଠିଆ ହୋଇଥିଲା ରେଖା । ଆଦ୍ରଁ ଆଖିରେ ତା'ର ଶୁଷ୍କାଚ୍ଛନ୍ନ ସରସୀର କାରୁଣ୍ୟ...ଉଦାସୀନତା ।

ସେ ହଜି ଯାଇଥିଲା କେଜାଣି କୋଉ ଚିନ୍ତା ଭିତରେ ।

ଗୋଟାଏ ତୀବ୍ର ବେଦନା ତା'ର ସମଗ୍ର ସତ୍ତ୍ୱାକୁ ଆଚ୍ଛନ୍ନ କରି ରଖିଥିଲା ।

ସୁମନ୍ତ କେତେବେଳେ ଆସି ଚୁପ୍‌ଚାପ୍ ଠିଆ ହୋଇଥିଲେ ତା' ପଛରେ। ତାଙ୍କୁ ପଠେଇ ଥିଲା ଗାୟତ୍ରୀ । ଯିବା ସମୟ ହୋଇ ଗଲାଣି । ଆଉ ଘଣ୍ଟାଏ ଭିତରେ ବସ୍ ଷ୍ଟାଣ୍ଡରେ ପହଞ୍ଚିବାକୁ ହେବ । କ'ଣ ହୋଇଛି ରେଖାର କେଜାଣି, ତା' ମନରେ ଟିକିଏ ବି ଆନନ୍ଦ ନାହିଁ । ତାଙ୍କ ସହିତ ହସି କରି ପଦେ ବି ତ କଥା ହେଉ ନାହିଁ !

ତମେ ଟିକେ ଯାଅ ! ଶାଳୀଙ୍କର ମନୋରଞ୍ଜନ କରି ଆସ !

ମୋ' ରାଣ ଯାଅ ! ତାକୁ ଟିକେ ହସେଇ ଦେଇ ଆସ ତ ! ତାଠୁ ବଡ଼ା ହେଇ ଆସ ନାଁ !

ସୁମନ୍ତଙ୍କ ମୁହଁ ଉପରେ ବଛେଇ ହେଇ ପଡ଼ିଥିଲା ଜହ୍ନ ଆଲୁଅ । ମୁହଁ ଟା ଲାଗୁଥିଲା ଖଣ୍ଡେ ଅଲେଖା କାଗଜ ପରି ଧଳା ।

କେତେବେଳକେ···ପ୍ରତିଧ୍ୱନିତ ହେଲା ପରି ଗହିରିଆ କଣ୍ଠରେ·· ସୁମନ୍ତ କହିଲେ—"କ'ଣ ହେଇଛୁ ତମର ରେଖା ?"

ରେଖା ବୁଲି ପଡ଼ିଲା । କିଛି ବି ସେ ପଢ଼ି ପାରିଲାନି ସୁମନ୍ତଙ୍କ ଆଖିରେ ।

"ତମେ ଯେତିକି ସୁକୁମାରୀ, ସେତିକି ଶକ୍ତ ।" ସୁମନ୍ତ ରେଖାର ଆଲୁଳାୟିତ କେଶ ଉପରେ ହାତ ଥୋଇଲେ । "କିନ୍ତୁ କାହିଁକି ଗୋଟାଏ ଅହେତୁକ ଯନ୍ତ୍ରଣା ଭିତରେ ଛଟପଟ ହେଉଛ ? ତମେ ନିଶ୍ଚୟ ଜୀବନରେ ସୁଖି ହେବ । କେବଳ ମୁହଁ ଟା ନୁହେଁ, ତମର ଏ ଦେହ, ମନ, ଆତ୍ମା ସବୁ ସୁନ୍ଦର ।"

"ସୁମନ୍ତ !" ତା'ର ମୃଦୁ ସ୍ୱର ଅସ୍ୱାଭାବିକ ଶୁଭୁଥିଲା, "ତମ ଛଡ଼ା ଆଉ କେହି···"

"ସୁମନ୍ତ ନୁହେଁ । ସୁମନ୍ତ ଭାଇ ! ମୁଁ ତମର ବଡ଼ ଭଉଣୀ ।"

ରେଖା ମୁଣ୍ଡ ଉପରୁ ତାଙ୍କ ହାତ ଖସି ଆସିଲା । ସେ ମୁହୂର୍ତ୍ତେ ନୀରବ ରହିଲେ । କିନ୍ତୁ ଆଖି ତାଙ୍କର ଲାଖି ରହିଥିଲା ସେମିତି ।

ଗ୍ୟାରେଜରୁ ଗାଡ଼ିଟା ବାହାରି ଆସି ପୋର୍ଟିକୋରେ ଠିଆ ହେଲା ବୋଧହୁଏ ।

"ଯାଉଛୁ ।" ଖୁବ୍ ଧୀର ଅଥଚ ନରମ ଗଳାରେ କହିଲେ ସୁମନ୍ତ । "ତମେ ଆସ । ବାହାରେ···ଆମୁକୁ ହସି ହସି ବିଦାୟ ଦିଅ !"

ସେଇ ଫିକା ଜହ୍ନ ଆଲୁଅରେ ସେ ବୁଲି ପଡ଼ି କିଛି ସମୟ ପାଇଁ ଏକ ନିରୀଶ ଦୃଷ୍ଟିରେ ଗ୍ୱହିଁ ରହିଲେ, ଯତେ ଯେମିତି ଯିବା ପୂର୍ବରୁ କିଛି ଗୋଟାଏ ଧରି ରଖିବାକୁ ଗ୍ୱହୁଁ ଥିଲେ ଗୁପ୍ତ ଭିତରେ ।

ଲୁହର କୁହୁଡ଼ି ଭିତରେ, ଶ୍ୱାସରୋଧ କରି ଦେବା ପରି ଯନ୍ତ୍ରଣା ଭିତରେ··· ରେଖା ଦେଖୁଥିଲା···

ତା'ର ପାନ ପାଞ୍ଚ ପରି ଆଖି ଦି'ଟା ଭରି ଆସୁଥିଲା କାରୁଣ୍ୟରେ ।

( ୪ )

ସମ୍ବଲପୁରରେ ପହଞ୍ଚିଲା ବେଳକୁ ବ୍ରୁକ୍‌ସ୍ ହିଲ୍‌ର ଘରଟା କେତେକାଂଶରେ ସଜଡ଼ା ହୋଇ ସାରିଥିଲା । ପହଞ୍ଚୁ ନ ପହଞ୍ଚୁଣୁ ପଡ଼ୋଶୀ ବିରୁପାକ୍ଷ ବାବୁ ସ୍ୱାଗତ ଜଣେଇବା ପାଇଁ ପଶି ଆସିଲେ ।

ମୁଁ ବିରୁପାକ୍ଷ ଦାସ । ଆପଣଙ୍କଠାରୁ ଦୁଇଟା ବ୍ୟାଚ୍ ସିନିୟର୍ । ବି. ଆଇ. ଟି.ର ଗ୍ରୁପ । ଆଜି ଦିନଟା ଆପଣ ଏଠି ଚା' ବି ପିଇ ପାରିବେନି । ଆସନ୍ତୁ ଆମ ଘରକୁ । ସବୁ ସେଇଠି ।

ବାଟିକ୍ ପ୍ରିଣ୍ଟ୍‌ର ସିଲ୍‌କ ଲୁଙ୍ଗି, ପତଳା ସିଲ୍‌କ ପଞ୍ଜାବୀ, ବେକରେ ସୁନା ଚେନ୍, ରସିକିଆ ଗୋଟେ ଚକ୍ ଚକ୍ ଚେହେରା, ଯେମିତି କୋଉ ଚଳଚ୍ଚିତ୍ରର ପ୍ରଡ୍ୟୁସର୍, ଡ଼ାଇରେକ୍ଟର୍, ହବେ ।

ଷ୍ଟେଟ୍ ଏକ୍ସପ୍ରେସ୍ ପ୍ୟାକେଟ୍‌ଟା ଓ ସୁନାରଙ୍ଗର ଲାଇଟର୍‌ଟା ଚିପି ଧରିଥାନ୍ତି ବାଁ ହାତରେ । ପାଛୋଟି ନେଲେ ପାଖ କ୍ୱାର୍ଟରକୁ । ଦର୍ପଣର ପ୍ରତିବିମ୍ବ ପରି ଆର ପଟଟା ।

ସ୍ୱାମୀଙ୍କ ପରି ସ୍ତ୍ରୀ । ଚେହେରା ଖୁବ୍ ସୁନ୍ଦର । ଟଣା ଟଣା ଆଖି । ତାଳୁରୁ ତଳିପା ଯାଏ ସୌନ୍ଦର୍ଯ୍ୟର ଲହଡ଼ି ଭାଙ୍ଗୁଛି । ତାଙ୍କ ନାଁ ବେବୀ ଦାସ୍ ।

ପରିଚୟର ଆଦାନ ପ୍ରଦାନ ପରେ, ବେବୀ ଦାସ୍ ଲସର ପସର ହେଲେ, ବ୍ୟସ୍ତ, ବିବ୍ରତ ହେଲେ । ପୂର୍ବାହ୍ଣ ଚା' ପରଶିଲା । ସକାଳର ଜଳଖିଆ ତିଆରି କରିବାରେ ଲାଗିଗଲା ।

ଚା' ପର୍ବରେ ବେବୀ ଦାସ୍ ଖିଲ ଖିଲ ହୋଇ ହସିଲେ, ଯେମିତି ହସ ସବୁ ଖୁନ୍ଦି ହେଇଛି ତାଙ୍କ ଗଳା ଭିତରେ ।

ବିରୁପାକ୍ଷ ବାବୁ କହିଲେ, ‘‘ଆପଣମାନେ ରାତି ଅନିଦ୍ରା । କ୍ଲାନ୍ତ ହେଇଥିବେ ନିଶ୍ଚେ । ଏଇଠି ବାଥ୍‌ରୁମ କାମ ସାରନ୍ତୁ । ଜଳଖିଆ ପରେ ବିଶ୍ରାମ ନେଇ ଯାଆନ୍ତୁ କିଛି ସମୟ । ଏତେ ବାଟ ଆସିବାର କ୍ଲାନ୍ତି ଟିକେ ମେଣ୍ଟି ଯିବ ।’’

ସୁମନ୍ତ ବିନମ୍ରର ସହିତ କହିଲେ, ‘‘ନାଁ ! ମୁଁ ଆଦୌ କ୍ଲାନ୍ତ ନୁହେଁ । ଆଜି ତ ମୋର ଜଏନ୍ କରିବା କଥା । ବରଂ ମୁଁ ଚାହିଁବି ବ୍ରେକ୍ ଫାଷ୍ଟ ପରେ ଇ. ଇ. ଙ୍କୁ ସାକ୍ଷାତ କରିବା ପାଇଁ ।’’

"ଠିକ୍ ଅଛୁ । ଯାହା ଆପଣଙ୍କର ଇଚ୍ଛା । ଗାଡ଼ି ଆପଣଙ୍କର ଆସିଯିବ ଏଠିକି ନ'ଟା ସୁଦ୍ଧା । ଅଫିସ୍ ବେଶି ଦୂର ନୁହେଁ । ଆପଣ ଏଠାକାର ସବୁକଥା ଜାଣିଛନ୍ତି ତ ?"

"ମୁଁ କିଛି ଜାଣି ନାହିଁ ।"

"କେମିତି ?"

"ସତରେ ମୁଁ କିଛି ଜାଣେ ନାଁ "

"ଇକ୍ ଇଟ୍ ?"

"ହଁ ।"

"ତା'ମାନେ ଆପଣ ଚେଷ୍ଟା କରି ଏଠି କି ଆସି ନାହାନ୍ତି ?"

"ନାଁ" !

"ଆଶ୍ଚର୍ଯ୍ୟ ! ବିନା ଚେଷ୍ଟାରେ ତ ଏ ସବ୍‌ଡ଼ିଭିଜନକୁ କାହାର ପୋଷ୍ଟିଂ ହେବା କଥା ଅନ୍ତତଃ ମୁଁ ଜାଣେନାଁ । ମୁଁ ବି ଚେଷ୍ଟା କରିଥିଲି ପ୍ରଥମେ ଆପଣଙ୍କ ସବ୍-ଡ଼ିଭିଜନ୍ ପାଇଁ । ଫେଲ୍ ମାରି ନାଁକୁ ଏଇ ହେଡ଼କ୍ୱାର୍ଟରସ୍ ସବ୍ ଡ଼ିଭିଜନ୍‌ରେ ପୋଷ୍ଟିଂ ହୋଇଛି । ଅବଶ୍ୟ ଚଳି ଯାଉଛି କିନ୍ତୁ ବଡ଼ ଅସୁବିଧାରେ । ଗାଡ଼ି ଖଣ୍ଡେ ରଖିଛି ଭାଇ । ଗାଡ଼ିଟା ରହିଲେ ତ ଗଡ଼ିବ ରାସ୍ତା ଉପରେ ।

ତା' ଛଡ଼ା ମୋ'ର ଗୋଟାଏ ଅଭ୍ୟାସ । ଅନ୍ତତଃ ମାସେ ଦି' ମାସରେ ଥରେ କଲିକତା ବୁଲିଯାଏ । ଟିକିଏ ଫୂର୍ତ୍ତି କରି ନ ଆସିଲେ ମୁଣ୍ଡଟା ଜାମ୍ ଧରିଯାଏ । ଆଉ ବେଗମ୍‌ଙ୍କର ଯାହା ଫର୍ମାଶ୍ ! ଥରେ କଲିକତା ଗଲେ ତାଙ୍କର ଇଚ୍ଛା ହୁଏ ସାରା ନିଉ ମାର୍କେଟ୍‌ଟା ଉଠେଇ ଆଣିବା ପାଇଁ ।

ଏଠିକୁ ଆସିଲି ଦିନୁ ଫୂର୍ତ୍ତି କରିବା କମି ଯାଇଛି ।

ସତରେ ଆପଣଙ୍କର ଏମିତି ଆପଣା ଛାଏଁ ପୋଷ୍ଟିଂ ହୋଇ ଯାଇଛି ଏଠି ?

...ନାଇଁ ମ ! ଅନୁପମ ବାବୁ ଆପଣଙ୍କ ଶଳା । ତାଙ୍କର ତ ଖୁବ୍ ଭଲ ର୍‍ୟାପୋର୍ଟ ଅଛି । ସେ ଚେଷ୍ଟା କରିଥିବେ ?"

"କାହିଁକି ବା ସେ ଚେଷ୍ଟା କରିବେ ? ମୁଁ ତ ତାଙ୍କ ଅଣ୍ଡର୍‌ରେ ଥିଲି । ଖୁସି ଥିଲି ମୁଁ କାମାକ୍ଷା ନଗରରେ ।"

"ଆହା ! ଆପଣ ସମ୍ବଲପୁରକୁ କାମାକ୍ଷା ନଗର ସହିତ ତୁଳନା କରୁଛନ୍ତି ?

ଯୁଝନ୍ତୁ ! ସେମିତି ବି ହେଉ ଭଲ ହେଉଛି । ଆପଣଙ୍କ ପୂର୍ବରୁ ଏଠି ଯିଏ ଥିଲେ, କେବଳ ଗୋଟେଇବା ଛଡ଼ା ତାଙ୍କର ଅନ୍ୟ କିଛୁ ଧନ୍ଦା ନ ଥିଲା । ତା'ଛଡ଼ା ସାରା ପରିବାରଟା ଚଢ଼ିଆଖାନାରୁ ଆସିଲା ପରି । ବେଶ୍ ଆଦୌ ଖାପ୍ ଖୁଆଇ ପାରୁ ନ ଥିଲା ସେମାନଙ୍କ ସହିତ ।

ଗୃହିଣୀ କ୍ଷେତ୍ରରେ ବି ତାଙ୍କ ଯୋଗ୍ୟ ମୋ' ଅବସ୍ଥା ସଙ୍ଗୀନ୍ । ଲୋକଟା ସକାଳୁ ସକାଳୁ ଏସ୍.ଇ.ଙ୍କ ଘରେ ହାଜର୍ ହେଇଯାଏ । ଚଟି ଖୋଲି ବାରଣ୍ଡାରେ ଚଢ଼େ । ହାତ ଯୋଡ଼ି ଟହଲ୍ ମାରେ । ମେମ୍ ସାହେବଙ୍କ ସାଂଗ୍ ଧନର ଫର୍ମାଶ୍ୱ କଲେକ୍ଟ କରି ନିଏ ।"

ମୋ'ର ତ ସ୍ୱଭାବ ଜନ୍ମ ସ୍ୱଙ୍ଗେ ଆଠଟା ପରେ । ତା' ଛଡ଼ା ଏମିତି ଗୋଟାଏ ସବୁ ଦିନ ସକାଳେ ଯାଇ ଗୋଡ଼ ଭାଙ୍ଗି ଠିଆ ହେବା···ମୋ' ପାଇଁ ବଡ଼ କଷ୍ଟକର ବ୍ୟାପାର୍ ।

ତେବେ, ସିଧା ଭୂଲନୀ ହେଇଯାଏ ।

ସାମନ୍ତସ୍ୱ ମୋ' ଉପରେ ମନେ ମନେ ଖୁବ୍ ଅସନ୍ତୁଷ୍ଟ । କେବେଠୁ ତଡ଼ି ସାରନ୍ତାଣି । ମୋ'ର ଟିକେ ପଲିଟିକାଲ୍ ଗ୍ରିପ୍ ଅଛି ବୋଲି ବର୍ତ୍ତି ଯାଉଛି ।

ହଁଅ ! କୋଉଁ ଏବେ ଭଲ ସବ୍‌ଡିଭିଜନ୍ ଟାଏ କି ?

ଆପଣ ଆସିଗଲେ, ମୁଁ ଭାରି ଖୁସି ।

ଦେଖନ୍ତୁ···ତା' ଖାପ୍‌ରରେ ଆଦୌ ପଡ଼ିବେନି ! ଭାରି ଚାଳଣେଇ କଥା କହିବ । କିନ୍ତୁ ସବୁ ଫାଇଦା ପାଇଁ । ମତଲବ । ଗୁରୁ ସମସ୍ତେ ।

ଟିକିଏ ଧର୍ମ ଦେଉଥିବେ, ପୁଣି ଖସି ଯାଉଥିବେ । ନ ହେଲେ ଏମାନେ ବଞ୍ଚିବା ହାରାମ୍ କରିଦେବେ ।

ତେବେ ଆପଣଙ୍କର ଗୋଟାଏ ସୁବିଧା । ଶଙ୍କର ମିଶ୍ର ହେଲେ ସବୁଠୁ ଧୁରନ୍ଧର ମଣିଷ । ତାଙ୍କ ସପୋର୍ଟ ପାଇଲେ ଆପଣ ସେଫ୍ ।

ଆମ ଇ.ଇ. ହରି ଭଣ୍ଡିଆ । ଖାଲି ଠାକୁର ଘରର ପତ୍ନୀଆ'ନ୍ତ । କବାରେ କମ୍ ତ ନାହିଁ କ ପ୍ରକାରେ କମ୍ ତ ନାହିଁ । ଚୈତେଲ ମେସ୍ତା ଶ୍ରେଣୀୟ । ଯିଏ ଯାହା କହିଲା, ହଁ ମାରି ଦଅନ୍ତି । ଦେଉଛି ତ ଅଯୁକ୍ତ୍ୟା ଭାଇ ! ନଡ଼ିଆ ପିଟା ହୁଏ ମୋ' ମୁଣ୍ଡରେ ।

ବସ୍ ଯଦି ଗଣ୍ଡଶା ମାଛ ହେଇ ଯାଆନ୍ତି ଯାବତୀୟ ଅସୁବିଧା ।"

ବ୍ରେକ୍‌ଫାଷ୍ଟ ଟେବୁଲ୍ ଉପରେ ସକାଳ ନ'ଟା ବାଜି ଯାଇଥିଲା । ଗାଡ଼ି ଆସି ବାହାରେ ଅପେକ୍ଷା କରି ଥିଲା । ସୁମନ୍ତ ତରବର ହୋଇ ବାହାରି ଗଲେ ।

ଶକ୍ତି ମିଶ୍ର ସବୁ ଦିନେ ସାଢେ ଆଠଟା ସୁଦ୍ଧା ଅଫିସରେ ପହଞ୍ଚି ଯାଆନ୍ତି । ଏଇଟା ତାଙ୍କର ନିତି ଦିନିଆ ରୁଟିନ୍ । ସିଗାରେଟ୍ ଧୂଆଁର କୁଣ୍ଡଳୀ ଉଡ଼େଇ ରକିଂ ଚେୟାର୍ ଉପରେ ସେ ଅନ୍ୟମନସ୍କ ଭାବେ ବସିଥିଲେ । ସୁମନ୍ତଙ୍କ ପରିଚୟ ପାଇ ତାଙ୍କ ମୁହଁରେ ଆତ୍ମୀୟତାର ହସ ଫୁଟି ଉଠିଲା ।

ୱେଲ୍‌କମ୍ ! ୱେଲ୍‌କମ୍ ! ଆପଣଙ୍କର କିଛି ଅସୁବିଧା ହୋଇ ନାହିଁ ତ ? ଅନୁପମ ମୋ'ର କେବଳ ବନ୍ଧୁ ନୁହେଁ । ଅତି ଅନ୍ତରଙ୍ଗ ବନ୍ଧୁ । ମୁଁ ଆପଣଙ୍କୁ ସେଇ ଦୃଷ୍ଟିରେ ଦେଖିବି ।

ଆପଣଙ୍କ ପ୍ରେଡ଼େସେସର୍ ସେ ସବ୍‌ଡ଼ିଭିଜନ୍‌ର ଗୃହଟି ଦେଇ ଲୋକାଲ୍ ଆରେଞ୍ଜ୍‌ମେଣ୍ଟରେ ରିଲିଭ୍ ହୋଇଗଲେ । କଟକରେ ପୋଷ୍ଟିଂ । କାଲେ କ୍ୟାନ୍‌ସେଲ ହୋଇଯିବ । ଆପଣ ହେଡ଼୍ କ୍ୱାଟର ଏସ୍.ଓ.ଙ୍କଠୁ ଗୃହ ନେଇଯିବେ ।

କାମ ଭିତରେ ଆପଣରଙ୍କର ଦି'ଟା ହଷ୍ଟେଲ୍ ବିଲ୍‌ଡ଼ିଂ ଗୁଳିଛି···ତିନି ତାଲା । ରାସ୍ତା ଅଛି । ଏମ୍. ଆଇ. ପି. ବି ଅଛି । ଏଫ୍.ଡ଼ି.ଆର୍. କାମ କରିବାକୁ ପଡ଼ିବ ଯୁଦ୍ଧ କାଳୀନ ଭିତ୍ତିରେ । ଏମ୍. ଆଇ. ପି. କାମ ସରିଛି । ରାସ୍ତା କାମ । ଆଜି ଗୃହ ନେଇ ଯାଆନ୍ତୁ । କାଲିଠୁ ଲାଗି ପଡ଼ନ୍ତୁ ।

ତା' ଛଡ଼ା ଆପଣଙ୍କର ସେଣ୍ଟ୍ରାଲ୍ ଷ୍ଟୋର୍ । ରିରୋଲିଂ ମିଲ୍‌ରୁ ସାରି ଷ୍ଟିଲ୍ ପାଇଁ ଛଡ଼ ରିସିଭ୍ କରିବେ । ଏଠୁ ସମସ୍ତେ ନେବେ । ଅବଶ୍ୟ ସବୁବେଳେ ନୁହେଁ । ବର୍ତ୍ତମାନ ପାଇଁ ।

ଓ.କେ. ! ବେଷ୍ଟ୍ ଅଫ୍ ଲକ୍ !

ନିଜ ରୁମ୍‌ରେ ପହଞ୍ଚି ସୁମନ୍ତ ଗୃହ ନେବାରେ ଓ କାମର ବିବରଣୀ ପଢ଼ିବାରେ ଲାଗିଲେ ।

ଗ୍ରେଟିଆ ରୁମ୍‌ଟିଏ । କିନ୍ତୁ ପରିଷ୍କାର । ବେଶ୍ ସୁନ୍ଦର । ଉନ୍ନତ ରୁଚିର ଟେବୁଲ୍, ଚେୟାର୍, ଆଲ୍‌ମିରା । ଝରକା ଦେଇ ଦିଶୁଛି ଷ୍ଟୋରୟାର୍ଡ଼ । ଛଡ଼ର ପର୍ବତ । ଏ.ସି.ସିଟ୍ ଗଦା । ପାହାଡ଼ର ଗଡ଼ାଣିରେ···ଯନ୍ତ୍ରୀଙ୍କ ଅଫିସ୍ ଯେମିତି ହେବା କଥା ।

ଇଣ୍ଟର୍‌କମ୍ ବାଜିଲା ।

ସୁମନ୍ତ ବାବୁ ! ମିଶ୍ର କହୁଛି । ଆପଣ ଏସ୍.ଇ.ଙ୍କୁ ଦେଖା କରିଛନ୍ତି ?

ନାଇଁ ସାର୍ !

ନାଇଁ ? କାହିଁକି ?

ସୁମନ୍ତ, ଚୁପ୍ ରହିଲେ ।

ଆଗ ଏସ୍.ଇ.ଙ୍କୁ ଦେଖା କରିଥା'ନ୍ତେ ନାଁ ? ଯାଆନ୍ତୁ ! କୁଇକ୍ ! ଅନ୍ତତଃ ଲଞ୍ଚ୍ ପୂର୍ବରୁ ଦେଖା କରି ଆସନ୍ତୁ । ଦେଖିଛନ୍ତି ତାଙ୍କ ଅଫିସ୍ ?

ନାଇଁ ସାର୍ !

ଆପଣଙ୍କ ଡ୍ରାଇଭର୍ ଦେଖିଛି ।

ସାହାବଙ୍କ ତଳର ସେ ଅଫିସ୍‌ରେ ସୁମନ୍ତ ପହଞ୍ଚି ଗଲେ ଅଳ୍ପ ସମୟ ଭିତରେ । ସ୍ଲିପ୍ ଦେଲେ ନ ଦେଉଣୁ ଡାକରା ଆସିଗଲା । ଚକ୍‌କଣ ହୋଇ ପାଲିସ୍ କରା ଯାଇଥିବା କେଶ । ଶ୍ୟାମଳ ବର୍ଣ୍ଣ । ମୋଟା ଫ୍ରେମ୍‌ର ଚଷମା । ବାଳ ସବୁ ଏମିତି ଚମତ୍କାର ଭାବେ ଡାଇ଼ କରାଯାଇଛି ଯେ, ମୋଟେ ମନେ ହେଉନି ରଙ୍ଗ ହୋଇ ପରି । ଆଗରେ ବାବା ଜର୍ଦ୍ଦା ଡବାଟାଏ । କାଚଗ୍ଲାସ ହୋଇ ଯାଇଥିବା କଫି କପ୍‌ଟା ଥୁଆ ହୋଇଛି ଗ୍ଲାସ୍ ଟପ୍ ଉପରେ ।

ଟିକ୍ ଭିନଅର୍ ଢଗ ଫେଲ୍‌ମେଣ୍ଟ୍, ବଙ୍କୁଳ ସବୁଦା, ଗାଳିକୁ ଲମ୍ଫିଛି ଏ ମୁଣ୍ଡରୁ ସେ ମୁଣ୍ଡଯାଏ ।

ଚଷମାର କାଚ ଭିତରୁ ନୂଆ ଏଗ୍‌.ଡ଼ି.ଓ.ଟାଙ୍କୁ ସାହେବ ଆଗେ ଆପାଦ ମସ୍ତକ ଦେଖି ନେଲେ ।

'ବସ' ।

ସୁମନ୍ତ ବସିଲେ । ତଥାପି ସାହେବଙ୍କ ଆଖି ପରଖୁଥାଏ ତାଙ୍କୁ ।

''କଫି ପିଇବ ?''

''ନାଇଁ ସାର୍ !''

''ନାଇଁ କାହିଁକି ? ପିଅ ! ମୁଁ ଦରଭ ନାହିଁ । ଗଭର୍ଣ୍ଣମେଣ୍ଟ ଅଫ୍ ଓଡ଼ିଶା ଇନ୍ ଗିଭିଂ । ପିଅ ।'' ସାହେବ ଇସାରା ହସିଲେ ।

କଫି ଆସିଗଲା ।

"ଶକ୍ତି ଫୋନ୍ କରି କହିଲା । ମୁଁ ଜାଣିଥିଲି ତମେ ଆଜି ଜଏନ୍ କରୁଛ । ତେବେ ଭାବିଥିଲି ସକାଳେ ତମ ସହିତ ଦେଖା ହବ ଘରେ ।"

ସାମନ୍ତରାୟ ସାହେବ ଗ୍ଲାସରେ କିଛି ସମସ୍ତ ଗୁଡ଼ିଁ ରହିଲେ ଚଷମା ଭିତରୁ ।

"ଚାର୍ଜ ନେଇ ଗଲଣି ?"

"ହିଁ ସାର୍ !"

"ମୁଁ ଚାହେଁ ମାସେ ଭିତରେ ସବୁ ଏଫ୍.ଡ଼.ଆର୍ କାମ ଶେଷ ହେବ ! ପୂଜା ପୂର୍ବରୁ ଇମିଡ଼ଏଟ୍ ରେଷ୍ଟୋରେସନ୍ ସରିବା ଦରକାର ଦରକାର । କଣ୍ଟ୍ରାକ୍ଟରମାନେ କାମ ସାରି ପଇସା ନେଇ ଘରକୁ ଫିରିବେ । ଯାନବାହାନ ଚଳାଚଳ କରିବ । ଡାଇଭର୍ସନ୍ ରେ ବସ୍ ଯିବା କଷ୍ଟକର ହୋଇ ପଡ଼ୁଛି ।"

"ହିଁ ସାର୍ ।"

"ଆଜି ଉପର ବେଳା କ'ଣ କରୁଛ ?"

"କାମ ବିଷୟରେ ଓଭର୍ସିଅର୍ମାନଙ୍କ ସହିତ ଆଲୋଚନା କରିବି । କାଲିଠୁ ଲାଗି ପଡ଼ିବି ଏଫ୍.ଡ଼.ଆର. କାମରେ ।"

"ମୋ' ସାଙ୍ଗରେ ଝାରସୁଗୁଡ଼ା ଆସ ।"

"କେତେବେଳେ ସୁବିଧା ହବ ?"

"ଆପଣ ଯେତେବେଳେ କହିବେ ।"

ବାବା ଜର୍ଦ୍ଦାରୁ ଟିକିଏ ପାଟିରେ ପକେଇ ସାମନ୍ତରାୟ ସାହେବ ସଜାଡ଼ି ହେଇ ବସିଲେ ।

"ଚାରିଟା ! ମୋ'ର ମନେ ହୁଏ ଦ୍ୟାଟ୍ ଉଇଲ୍ ବି ଆଇଡ଼ିଆଲ୍ ।"

"ସାର୍ ।"

ବିରୁପାକ୍ଷ ବାବୁଙ୍କ ଘରେ ଲଞ୍ଚ ଖାଇ ଠିକ୍ ଚାରିଟାରେ ସୁମନ୍ତ ଆସି ପହଞ୍ଚିଗଲେ ଏସ ଇ.ଙ୍କ କ୍ୱାଟର୍ରେ ।

ବେଙ୍କ ଦାସଙ୍କର ସବୁ ଅନୁରୋଧ ସତ୍ତ୍ୱେ ଶାସ୍ତ୍ରୀ କହିଲେ, ରାତି ଖାଇବାଟା ଆମେ ଆମ କ୍ୱାଟର୍ ରେ ଖାଇବୁ । କିଛି ଅସୁବିଧା ନାହିଁ । ଅସୁବିଧା କ'ଣ ? ଦି'ଜଣ ମଣିଷ ତ ! ମୁଁ ପରିବା ପତ୍ର କିଛି ନେଇ ଆସିଛି ଢେଙ୍କାନାଳରୁ । ଆଉ ବାଧ୍ୟ

କରନ୍ତୁ ନାହିଁ । ପଡ଼ୋଶୀ ହେଇ ରହିବା । ଖୁଆଇବା ସମସ୍ତ କ'ଣ ଗୃହ ଯାଉଛ ? ଆପଣଙ୍କୁ ଯନ୍ତ୍ର ଅଯତ୍ନ ନ କରନ୍ତୁ ନାଁ ମତେ କହିବେ ! ଆମେ ଯେମିତିକା ମଣିଷ ଅଠା ପରି ଲଗିଯିବୁ । ଆପଣ ପାଶୋରିବେନି ଆମୁକୁ ।

ହଉ ଦେଖିବା !

ଗାସୃଷୀ କ୍ୱାର୍ଟରକୁ ଆସି ସଜଡ଼ା ସଜଡ଼ିରେ ଲଗି ଗଲେ ।

ସୁମନ୍ତ ପହଞ୍ଚିଲା ବେଳକୁ ସାହେବଙ୍କ ଘରର କବାଟ ଝରକା ସବୁ ବନ୍ଦ । ବାହାର ବରଣ୍ଡାରେ ଦନ ଜଗୁଆଳୀ ବସି ରହିଛି ଅସତର୍କ ଭାବେ । ଆଗ ସିଟ୍‌ରେ ଶୋଇ ପଡ଼ିଛି ଡ୍ରାଇଭର୍ ।

ଜଗୁଆଳୀ ନମସ୍କାର କଲା । ସୁମନ୍ତ କହିଲେ ମୁଁ ତମର ନୂଆ ଏସ୍.ଡ଼ି ଓ. । ଏସ୍.ଇ.ଙ୍କୁ ଖବର ଦିଅ ।

ସାହେବ ଶୋଇଛନ୍ତି ।

ଶୋଇଛନ୍ତି ?

ଆଜ୍ଞା !

ସୁମନ୍ତ ଟିକେ ଚିନ୍ତା କଲେ ।

ହଉ । ଡ୍ରଇଂ ରୁମ୍‌ଟା ଖୋଲ । ମୁଁ ଅପେକ୍ଷା କରିବି ।

ଜଗୁଆଳୀ ବୋକା ପରି ଚାହିଁଲା । ଭିତର ପଟୁ ବନ୍ଦ ହେଇଛି ସାର୍ ! ସାହେବ ନ ଉଠିଲେ, ବୈଠକଖାନା ଖୋଲେ ନାହିଁ ।

ଅଗତ୍ୟା ସୁମନ୍ତ ପାଇଚାରି କଲେ । ଏ ପାଖେ ଦଶ, ସେ ପାଖେ ଦଶ୍ । ଏଇମିତି କେତେ ଦଶ୍ ଗଲାପରେ ଏବଂ ସାଢ଼େ ଚାରିଟା ବାଜିଲା ଉତ୍ତାରୁ ସାହେବ ବାହାର ଆସିଲେ, ଭାଜା ଭଟକା ଅବସ୍ଥାରେ । ହାତରେ ସେଇ ବାବା ଜର୍ଦ୍ଦାର ଡ଼ବା । ଡ୍ରାଇଭର୍‌ର ବ ସିଏସ୍ଥା ଭାଙ୍ଗି ଯାଇଥିଲା ।

ସାହେବ କହିଲେ, ବସ ସୁମନ୍ତ ।

ଗାଡ଼ି ଗଡ଼ି ଚାଲିଲା ।

ରେଙ୍ଗାଲି ବଙ୍ଗଳାରେ ପହଞ୍ଚିଲା ବେଳକୁ ଗ୍ରୁଇ ତଳର ଗମ୍ଭୀର ପାଣି ପରି ଛଳ ଛଳ ଆଖିରେ ଠିଆ ହୋଇଥିବା ଓଭର୍‌ସିଅର୍ ବାବୁ ତରବରରେ ଓହ୍ଲେଇ ଆସିଲେ । ତାଙ୍କ ମୁହଁରେ ଆଶଙ୍କା ଓ ଆତଙ୍କର ଛାପ ।

କିନ୍ତୁ ଆଶଙ୍କାର କାରଣ କିଛି ନ ଥିଲା । କାରଣ ସାହେବ ଥିଲେ ପ୍ରଶାନ୍ତ ।

ଆରାମ ଚେୟାର୍ ଉପରେ ଦେହ ଢାଳି ସେ ଆଦର କଲା ପରି ପଚାରିଲେ, ଆଉ କ'ଣ ଖବର ବର୍ମା ବାବୁ ?

ବର୍ମା ବାବୁ ଦାନ୍ତ ନିକୁଟି, ଗ୍ଲାସ ଓ ଫଳ ସଜାଡ଼ି ରଖିଲେ ।

ଢିଲା ପ୍ୟାଣ୍ଟ, ମଇଳା ସାର୍ଟ ଓ ହାୱାଇ ସ୍ଲିପର୍‌ରେ ଏବଂ ମୁହଁ ଓ ଆଖିର ଭାବ ଭଙ୍ଗୀରେ କରୁଣ ଦିଶୁଥିଲେ ମଧ୍ୟ ସେ ଥିଲେ ଏକ ବିଶାଳ ଚଉଖୁଣ୍ଟିଆ ମଣିଷ । ତାଙ୍କ ଚାଲିରେ ଏତେ ଶକ୍ତି ଥିଲା ଯେ, ମନେ ହେଉ ଥିଲା ଚଟାଣ ଥରି ଉଠୁଛି ।

"ତମ ନୂଆ ଏସ୍. ଡି. ଓ. ।"

ବର୍ମାବାବୁ ବିନମ୍ର ପ୍ରଣାମ ଜଣାଇଲେ ।

"କାଲିଠୁ ସେ ଏଇଠି କ୍ୟାମ୍ପ କରିବେ । ଏଫ୍. ଡି. ଆର୍. କାମ ଶେଷ ହେବା ପର୍ଯ୍ୟନ୍ତ । କେତେ ଦୂର ଗଲାଣି ? ତମ ଇ. ଇ. ଆସିଥିଲେ ?"

ଆସିଥିଲେ ସାର୍ ! କଲେକ୍‌ସନ୍ ଚାଲିଛି ।

"କ'ଣ ହୋ କଲେକ୍‌ସନ୍ ଚାଲିଛି ?"

ଚୁ' ପିଉ ପିଉ ସାମନ୍ତରାୟ ସାହେବ ପରିହାସ କଲା ପରି କହିଲେ "ତା' ମାନେ ଏ ବର୍ଷ କଥା ନୁହେଁ ନା କ'ଣ ?

ଆରେ ସୁମନ୍ତ ! ଚୁ' ପିଅ ! ଫ୍ରୁଟ୍‌ସ୍ ନିଅ । ତମେ ପରା ହୋଷ୍ଟ !

ହଇଓ ! ଅଗର୍‌ୱାଲ୍ ଗଲା କୁଆଡ଼େ ?"

କିଛି ଗୋପନ ଅର୍ଥ ଥିଲା ପରି ମୁଣ୍ଡ କୁଣ୍ଡେଇ ବର୍ମା ବାବୁ କହିଲେ, ଏଇଠିକି ଟିକେ ଯାଇଛି ସାର୍ !"

"ବର୍ମା !"

"ସାର୍ !"

ଗୁମ୍‌କେଇରେ ଗୋଟାଏ ହଉ । ଅଶୋକ ନିବାସ । ଡାଇକ୍ ଫାଇକ୍ ପୁରୁଣା ହେଲାଣି । ଏବେ କଣ୍ଟ୍ରାକ୍‌ଟର୍ ଦେଇଥିଲା ପାର୍ଟିଟାଏ ଅଶୋକ ନିବାସରେ, ଚଢ଼େଇ ମାଂସରେ ଏତେ କିସମର କରିଥିଲା ଯେ···ଠିକଣା ନାହିଁ । ଭିଜିଲାନ୍‌ସ୍ ଏସ୍.ପି.,

କଲେକ୍ଟର ବ’ ଜଣ ଯାକ ମତେ କହିଲେ—ଆଉ ଥରଟା ଆପଣଙ୍କ ଆଡୁ । ଘରେ .
ଗୋଟାଏ ନୂଆ ଜାଗା ଆମର ଦରକାର । ଜଙ୍ଗଲଟିଆ । ଯୋଉଠି ଆମର ହୋପ୍
ରହିବ ନାହିଁ । ଦେଖିବା ପି. ଡ଼ବ୍ଲୁ. ଡ଼. ଟେମ୍ପଲ୍ କ ନାହିଁ ଫରେଷ୍ଟକୁ ?

ମୁଁ କହିଲି ଫୁଃ ! ତମର ଆଉ ଦେଖିବାକୁ ବାକି ଅଛି ? ଦେଖିକ
ପି.ଡବ୍ଲୁ.ଡ଼. ? ଜଙ୍ଗଲମାନେ କ ଜାଣନ୍ତି ଖାଇବା ମାହାତ୍ମ୍ୟ ?

କିନ୍ତୁ ସତରେ ମନେ ରଖିଲି ପର ପାର୍ଟିଟାଏ ଦେଇଥିଲି କଣ୍ଟ୍ରିଭେଟର୍ ।

ଆମର ଠିକ୍ ଠାକ୍ ହୋଇ ପାରିବଟି ବର୍ମା ?’’

ସାହେବଙ୍କର ଏମିତି ଖୋଲା ଫାଙ୍କା ଅନ୍ତରଙ୍ଗ କଥାରେ ଶିଚେଇ
ଉଠିଲେ ବର୍ମାବାବୁ ।

ହବ ସାର୍ ! ଖୁବ୍ ଭଲ ହବ । ହମିଦ୍‌କୁ ନେଇ ଆସିବ । ତା’ ତୁଳନାରେ
ଅଶୋକ ନବାସ୍‌ର କୁକ୍ ତ କିଛି ନୁହେଁ । ଯେତେ ଆଇଟମ୍ ଗୃହିଁବେ ସାର୍ !
ଗୋଟାଏ ଧନର ନୋଟିସ ଦରକାର ।’’

ଆମ୍ବାସଡ଼ର୍‌ଟାଏ ପଶିଲା ଆଇ.ବି.ହତା ଭିତରକୁ । କିଛି ତଫାତ୍‌ରେ
ସାଇଡ୍ କରି ଠିଆ କଲା ଡ୍ରାଇଭର୍ । ଧୋଇ ସାର୍ଟ ପିନ୍ଧି କଶାନ୍ ଅଗ୍ରୱାଲ୍
ଓହ୍ଲେଇ ଆସିଲେ । ବ’ଟା ବଡ଼ ବଡ଼ ଟିଣ କାର୍‌ରୁ ବାହା ହୋଇଗଲା ଜିପ୍ ପଛକୁ ।
ଅଗ୍ରୱାଲ୍ ନମସ୍କାର କରି ବେତମୋଡ଼ା ଚେୟାର୍‌ଟାଏ ଉପରେ ବସି ପଡ଼ିଲେ ।
‘‘ବୁଝିଲେ ଅଗ୍ରୱାଲ୍ ବାବୁ ! ମୁଁ କହୁଥିଲି ଏଇ ପାର୍ଟି କଥା ! ଆମେ
ଯୋଉ ଗଲା ଡିସେମ୍ବରରେ କରିଥିଲେ କୁଲାରେ ! ଖୁବ୍ ଭଲ ହୋଇ ନ ଥିଲା ?

ସାର୍ ! ସାର୍ !

ସବୁ ତ ଥିଲା ଆପଣଙ୍କର ଦାୟିତ୍ୱ ।

‘‘ମୁଁ ତ ସେବକ ସାର୍ !’’ ଅଗ୍ରୱାଲ୍ ବାବୁଙ୍କର ଦରଖୋଲା ଓଠ
ବ’ଟା ଦେଖିଲେ ମନେ ହେଉଥିଲା, ସାହେବଙ୍କର ସମସ୍ତ ବାଣୀକୁ ସେ ଆଖି
ପିଛୁଳାକେ ଶୋଷି ନେବେ ।

ଛ’ଟା ବାଜି ସାରିଥିଲା । ବ’ ପରସ୍ତ ଗ୍ଲ’ ପିଆ ସରିଥିଲା । ସାହେବ
ଉଠିଲେ । ଉଠୁ ଉଠୁ କହିଲେ ଆଉ ଗୋଟାଏ ପାର୍ଟି ହେବ ଗୁମଲେଇରେ ।
ତାରିଖ ଜଣେଇବ ଆପଙ୍କୁ ।

"ଠିକ୍ ଅଛୁ ସାର୍ !"

ଗାଢ଼ ଗଢ଼ ଗ୍ରିଲର ଷ୍ଟେଟ୍ ହାଇଓ୍ୱେ ଉପରେ । ଅଟକଲ ଝାଉଁପୁରୁଗୁଡ଼ାର କୋଉ ଗୋଟାଏ ଘର ଆଗରେ କେକାଣି । ଠିକ୍ ବାଣ ହେଉ ନ ଥିଲା । ମେନ୍ ରୋଡ଼ରୁ ଅନେକ ଗଛପତ୍ର ଭିତରେ ସରୁ ରାସ୍ତା । ପୁରୁଣା କାଳିଆ ଇଟା ଖୁଣ୍ଟି ଉପରେ ପୋର୍ଟିକୋ । ପୋଟିକୋରେ ଜଳୁଥିଲା ନିଷ୍ପ୍ରଭ, ଧୀପ୍ତି ଶୂନ୍ୟ ବଲ୍‌ବ୍ ଟାଏ ।

ଘର ଭିତରୁ ଯିଏ ବାହାରି ଆସିଲେ, ସେ ପିନ୍ଧିଥିଲେ ନୀଳ ଅପରାଜିତା ରଙ୍ଗର ଶାଢ଼ୀ । ବସ୍ତ୍ରର ରଙ୍ଗ ଉପରେ ନିଷ୍ପ୍ରଭ । ଉଜ୍ଜ୍ୱଳ, ମସୃଣ ଚେହେରା ।

ସୁମନ୍ତଙ୍କୁ ସେଇ ଜମିଦାରିଆ ବୈଠକ ଖାନାରେ ବସେଇ ଦେଇ ସେ ସାମନ୍ତରାୟ ସାହେବଙ୍କୁ ଅନ୍ତଃପୁରକୁ ନେଇଗଲେ । ଅଳ୍ପ ସମୟ ପରେ ଟିକି ପିଲାଟିଏ ଟ୍ରେ ଉପରେ କପେ କଫି, କିଛି ଲୁଣି ବିସ୍କୁଟ୍ ନେଇ ପହଞ୍ଚିଲା ।

ସେ ପଟେ ଖୋଲା ବାରଣ୍ଡା ଓ ଅନେକ ରୁମ୍ । କିନ୍ତୁ ଏତେ ଚୁପ୍‌ଚାପ୍ ଥିଲା ଯେ ଲାଗୁଥିଲା ଯେମିତି ପ୍ରଶାନ୍ତ ଏବଂ ସୁଷୁପ୍ତିର ଇଲାକାଟାଏ । ରାଜପଥରେ ଯାଉଥିବା ଯାନ ବାହାନର ଶବ୍ଦ ବି ପହଞ୍ଚି ପାରୁ ନ ଥିଲା ।

ସୁମନ୍ତ କଫି ପିଇଲେ ।

ଅନ୍ୟମନସ୍କ ଭାବେ ବାହାରକୁ ଚାହିଁ ଚାହିଁ ଅନେକ ସମୟ କଟେଇଲେ । କେତେ ଥର ଭିତର ବାହାର ହେଲେ । ଛୋଟା ଭିତରର ରାସ୍ତା ଉପରେ ପଛପଟେ ହାତ ଛନ୍ଦି ବୁଲିଲେ । ଦଶମୀ ତିଥିର ଜହ୍ନକୁ, ଜ୍ୟୋତ୍ସ୍ନାଚ୍ଛନ୍ନ ଆଖିକାକୁ କେତେ ଥର ଦେଖିଲେ ।

ପ୍ରତୀକ୍ଷାର କ୍ଳାନ୍ତିରେ ପୁଣି ଆସି ବସିଲେ ସେଇ ସୋଫା ଉପରେ । କେତେବେଳକେ···ବୋଧହୁଏ ରାତି ଦଶଟା ଟପି ସାରିଥିବ, ସାମନ୍ତରାୟ ସାହେବ ବାହାରିଲେ ଅନ୍ତଃପୁରରୁ. ତାଙ୍କ ସହିତ ଭଦ୍ର ମହିଳା । ଭଦ୍ର ମହିଳା କ୍ଷମା ଚାହିଁଲେ । "ଆଃ ! ଆପଣ ବସି ବସି ବଡ଼ ବିରକ୍ତ ହୋଇଥିବେ ··ନାଁ !"

ତାଙ୍କ ମୁହଁରେ ବିନମ୍ର ଲାବଣ୍ୟ । ଚାହାଣୀରେ ସୁଆଗିଆ ଭାବ ।

ସାମନ୍ତରାୟ ସାହେବ କହିଲେ, ଆରେଃ ନାଁ···ନାଁ ! ଆମେ ସବୁ ଏଥିରେ ଅଭ୍ୟସ୍ତ ଇଞ୍ଜିନିୟର ମାନଙ୍କ ପାଇଁ ପ୍ରତୀକ୍ଷାଟା କ୍ଲାନ୍ତିକର ନୁହେଁ । ଆସ ସୁମନ୍ତ !

( ୭ )

ଗ୍ରୁମ୍‌ଲେଞ୍ଚର ଫରେଷ୍ଟ ବଙ୍ଗଲାରେ ପାର୍ଟି । ଆଠ ଦଶ ମଣିଷ । ଯୋଉମାନେ ଏ ଦୁଃସ୍ଥ ଇଲାକାକୁ ଶାସନ କରୁଛନ୍ତି, ରକ୍ଷା କରୁଛନ୍ତି, କମ୍ବା ଅନ୍ୟ କିଛି ପ୍ରକାରର ଗୁରୁ ଦାୟିତ୍ୱ ବହନ କରୁଛନ୍ତି, ସେଇ ମୁଣ୍ଡିଆଳ ଉପରିକମାନେ ।

କଲେକ୍ଟରଙ୍କୁ ଗଜା ଢୋକା କୁହାଯାଇ ପାରେ । ଚିକ୍‌କଣ ଗାଲ, ଦାନ୍ତଚିପା ଇଂରେଜୀ, ହୁଗୁଳା ଝାଇ । ସିଂହାସନରେ ବସିଥିବା ମଣିଷ ଯେମିତି ଅଳ୍ପ ଅଳ୍ପ ହସିଥାଏ, ସେମିତି ମଧୁର ହସ ।

ଆଖିରୁ କଅଁଳ ଝୁଲ ଝରାଉଥିବା, ମୁକୁଳା ବାଳକୁ -ଗ୍ରନ୍ଥି ଦେଉଥିବା ଓ ଇଣ୍ଟେଲେକ୍‌ଚୁଆଲ୍‌ର ସ୍ତ୍ରୀ ପରି ଯୋଗ୍ୟତା ଥିବା ତାଙ୍କର ତନୁ ପାତଳୀ ପତ୍ନୀ ।

କଲେକ୍ଟରଙ୍କ ସମବୟସ୍କ ଏସ୍.ପି. । ଖେଳୁଆଡ଼ ଚେହେରା, ନାଲିଗ୍ମ ଆଖି, ଦେଖିଲା ପରି ଜଣ ହଲେ । କଠିନ ମାଂସପେଶୀ ।

ଶରୀରରେ ଏକ ରହସ୍ୟମୟ ଆକର୍ଷଣ ଧରି ଝୁଲିଥିବା, ରଙ୍ଗୀନ ପ୍ରଜାପତି ପରି .....ଜୀବନ ବଗିଚାରେ ଉଡ଼ି ବୁଲୁଥିବା......ସମ୍ଭ୍ରାନ୍ତ, ଉତ୍ତେଜନା ସର୍ବସ୍ୱ ମିସେସ୍ ଏସ୍.ପି. ।

ଲକଲକା ଭଜଳନ୍‌ସ୍ ଏସ୍.ପି. । କୁଳୁ କୁଳୁ ନାଦରେ ଏପଟ ସେପଟ ବୋହି ଯାଉଥିବା ଝରଣାଟିଏ ପରି...ପ୍ରକୃତି ଭିତରେ ବ୍ୟାପ୍ତ ହେବା ପରି...ପରସ୍ତ ପରସ୍ତ ହସୁଥିବା ଓ ଖସି ଯାଉଥିଲା...ଉଡ଼ି ଯାଉଥିବା ଲୁଗାକୁ ସଜାଡ଼ୁଥିବା ତାଙ୍କ ଶ୍ରୀମତୀ ।

ମିଟି ମିଟି ଆଖି, ବସନ୍ତ ମୁହଁା ଡାକ୍ତର. ବର୍ଦ୍ଧିଷ୍ଣୁ ଶରୀରର...ତାଙ୍କ ପ୍ରେମଶୀଳା ମିସେସ୍ । ଦଶ ବର୍ଷର ଫୁଲେଇ ଝିଅ । କଳା କଳା ଡୋଳା, ଲୋଭନୀୟ କେଶ ସମ୍ଭାର । ସେ ଯେମିତି ଏଠିକି ଆସିଛି ସମସ୍ତଙ୍କ ଉପରେ ହାକମ କରିବା ପାଇଁ ।

ନାମଜାଦା ଫ୍ରେଞ୍ଚାଇଆନ୍ ଅଭୟ ରଥ । ତାଙ୍କ ପିଙ୍କ୍ କଲର୍‌ର ଟି ସାର୍ଟ ଉପରେ ଅନେକ ନାରୀଙ୍କର ଚିହ୍ନ । ଉତ୍ତର ପଶ୍ଚିମରେ ବି ବେଶ୍ ସ୍ମାର୍ଟ ।

...ଓ...ଅନ୍ୟମାନେ ।

ସେମାନେ ଉଜ୍ଜ୍ୱଳ ଆଲୋକ, ଶୀତତାପ ନିୟନ୍ତ୍ରିତ ଘର, ଉର୍ଦ୍ଧ୍ୱଶିଖା ବକ୍ତୃତା ଓ ଆଦବ୍‌କାଇଦା ଇତ୍ୟାଦିରେ କ୍ଲାନ୍ତ ହୋଇ ଖୋଜୁଥିଲେ ଏମିତି ଏକ ପରିବେଶ, ଯୋଉଠି ରାତି ଥିବ ନୀରବ, କାଳି କୁହୁଡ଼ିଆ ପରିବେଶ ଥିବ ମୂର୍ଚ୍ଛିତ, ନିଦ୍ରିତ ।

ଗୁମ୍ ହୋଇ ଥିଲା ସେଥିପାଇଁ ଉପଯୁକ୍ତ ସ୍ଥାନ ।

ସାମନ୍ତରାୟ ସହେବ କଣ୍ଟ୍ରାକ୍ଟର୍ ମିଷ୍ଟର୍ ବସ୍ତିଆଙ୍କୁ କହୁଥିଲେ, ବୁଝିଲ ! ଉମର ଯାଗାକୁ ନେଇ ତମକୁ ଚମକେଇ ଦେବ ।

ସତେ ?

କିନ୍ତୁ ସତରେ, ପରିବେଶର ଚମତ୍କାରତାରେ ସେମାନେ ଚମକି ପଡ଼ୁଥିଲେ । ଖାଲି ସେମାନେ କୁହନ୍ତି, ତରୁଣୀମାନେ ମଧ୍ୟ । ଏମିତି ଯାଗା ଏତେ ପାଖରେ ଥିଲା ! ଅଥଚ···ଆମେ···

ସେଇ ତ କଥା ! ଇଞ୍ଜିନିୟରମାନଙ୍କର ଦୃଷ୍ଟି ସେମିତି । ମାନିଲ ତ !

ନେଳିଆ ଲୁଙ୍ଗିଟାଏ ପିନ୍ଧି, ରୁପା ତାବିଜ ବେକରେ ପକେଇ, ହମିଦ୍ ମିଆଁ ଲାଗି ପଡ଼ୁଥିଲା ରୋଷେଇରେ । ତା' ଖୋଲା ଦେହର କାଖ ତଳୁ, ଅଣ୍ଟା ପାଟରୁ ଝାଳ ନିଗିଡ଼ି ପଡ଼ୁଥିଲା । ଏଇ କାମ କରି କରି ତା' ଦାନ୍ତ ପଡ଼ିଗଲାଣି, ଦେହର ମାଂସପେଶୀ ସବୁ ଶିଥିଳ ହୋଇ ଗଲାଣି ।

ସେଠି ତହସିଲ୍ଦାରଙ୍କ ଲୋକ ନ ଥିଲେ, ନ ଥିଲେ ଥାନାବାଲା ବା ଜଙ୍ଗଲ ବାବୁମାନେ । ଆଉ କେହି ନ ଥିଲେ । କେବଳ ହୋଷ୍ଟଙ୍କ ଟିମ୍ ଛଡ଼ା ।

ରୋଷେଇ ଘରଠାରୁ ଅଳ୍ପ ଦୂରରେ ଗୋଟାଏ ଚେୟାର୍ ଉପରେ ବସିଥିଲେ କପ୍ତାନ୍ ଅଗ୍ରଓ୍ୱାଲ୍ । ମେଦଙ୍ଗ ଜମେଇ ଏପଟ ସେପଟ ଧାଁ ଦଉଡ଼ କରୁଥିଲେ ବର୍ମାବାବୁ ।

ଆନେକ୍ସି ବାରଣ୍ଡାରେ ସୁମନ୍ତ ଓ ବିରୂପାକ୍ଷ ବାବୁ । ସୁମନ୍ତ ଧଳା ହୋଇ ଆସିଥିଲେ ଏଫ୍.ଡ଼ି ଆର୍. କାମ ଉପରୁ । ସୁମନ୍ତ କହୁଥିଲେ, ଯେତେବେଳେ ଆମେ କଲେଜରେ ପଢ଼ୁଥିଲୁ ! ଗୋଟାଏ ଗୋଟାଏ ବ୍ଲେଜର ପକେଇ ବାହାରି ପଡ଼ିଲେ କେତେ ଗର୍ବ, କେତେ ଆନନ୍ଦ ମନରେ ! ଅନେକ ସ୍ୱପ୍ନ ସେତେବେଳେ ଜମାଟ୍ ବାନ୍ଧିଥିଲା···କିନ୍ତୁ କ'ଣ ଦେଖୁଛୁ ଏ ବାସ୍ତବ କ୍ଷେତ୍ରରେ !

କ'ଣ ଦେଖୁଛନ୍ତି ? ସ୍ୱପ୍ନରେ କ'ଣ ସିକ୍ୟୁରିଟି ଥାଏ । ଥାଏ ଜବାପତ୍ର ? ବାସ୍ତବତାକୁ ଆବୋରି ନେବା ହିଁ ବଡ଼ ମଣିଷର କାର୍ଯ୍ୟ । ସମସ୍ତଙ୍କ ମନରେ ସେମିତି ଚିନ୍ତା ଥାଏ ।

କହିବ ମୋ'ର ଗୋଟାଏ ନିଜସ୍ୱ ଅନୁଭୂତି ? ନୂଆ ବାହାରିଥାଏ କଲେଜରୁ । ଇଞ୍ଜିନିୟରଙ୍କର ଯୋଉ ମୂଲ୍ୟ ! ନିଜକୁ ଖୁବ୍ ଦାମୀ ମଣିଷ ବୋଲି ଭାବୁଥିଲି ।

ବାପାଙ୍କ ପାଖକୁ ଅନେକ ବାହାଘର ପ୍ରସ୍ତାବ ଆସୁଥିଲା । ଶ୍ୱଶୁରମାନେ ବ୍ୟସ୍ତ ବିକଳ ହେଉଥିଲେ ଇଞ୍ଜିନିୟର ଜ୍ୱାଇଁ କରିବା ପାଇଁ ।

( ବିରୂପାକ୍ଷ ବାବୁ ହସି ଦେଲେ । )

ସେ ଦୃଷ୍ଟିରୁ ଆମମାନଙ୍କ ଶ୍ୱଶୁରମାନେ ନିଶ୍ଚୟ ଭାଗ୍ୟବାନ । ନାଁ କ'ଣ କହୁଛନ୍ତି ?

ଆରେ ଭାଇ ! କିମ୍ ତକ, ଯେତେକ ଫାଷ୍ଟକ୍ଲାସ୍ ପିଲା ଗଲେ ଇଞ୍ଜିନିୟରିଂରେ । ବାକି ଯେଉଁ ବଳିଗଲେ ସେମାନେ ତ ଅନ୍ୟ କିଛି ହେଲେ । ଅନ୍ୟ କେତେ କ୍ରିକିଷ୍ଟାଣ୍ଡ୍ କୁ ଗ୍ରୁଡ଼୍ ଦେଲେ ବାକି ଆଇ.ଏ.ଏସ୍., ଆଇ.ପି.ଏସ୍. ବ କ'ଣ ? ମଧ୍ୟମ ବର୍ଗୀ ଗ୍ରୁପ ନୁହନ୍ତି ?

ଗ୍ରୁଡ଼୍ନୁ...

ପ୍ରଥମ ପୋଷ୍ଟିଂ ଚିଫ୍ ଇଞ୍ଜିନିୟରଙ୍କ ଅଫିସ୍‌ରେ । ମୋ'ର ମୁନ୍ଦଆଁ କୋଚା ଆଖିରେ କଳା ଚଷମା, କାଓବୟ ପ୍ୟାଣ୍ଟ, ବାଦଶାହୀ ଗ୍ରୁଲ୍ ।

କଥା ଅଧାରେ ରଖି ବିରୂପାକ୍ଷ ବାବୁ ଡାକ ଗ୍ରୁଡ଼ିଲେ, ହେଇ ବର୍ମାବାବୁ ! ଇଆଡ଼େ ଆସ । ହଇଓ ! କେବଳ କ'ଣ ସାହେବମାନଙ୍କ କଥା ଶୁଣୁଥିବ ?

ବର୍ମାବାବୁ ରେଫେରି ଘର ପଛୁ ଆସି ଆଦେଶ ପ୍ରତୀକ୍ଷାରେ ଠିଆ ହେଲେ ।

କରେକ୍ଟ ! ଏସ୍.ଓ. ହେଇ ତୋ ଶୀଯା ! ଭାଇ ! ସାହା କୁହ ! ଭଗବାନ ତମୁକୁ ଜନ୍ମରୁ ପି.ଡବ୍ଲ୍ୟୁ.ଡ଼ି. ଏସ୍. ଓ. କରି ଜନ୍ମ କରିଥିଲେ । ଅବଶ୍ୟ ..ତମେ ହେଇ ପାରଥା'ନ୍ତି ମଧ ଗୋଟାଏ ପୋଲିସ୍ ସବ୍ଇନ୍‌ସ୍ପେକ୍ଟର । ଭଲ ହୋଇଛି ତମେ ଆମ ଫଣ୍ଡାରେ ଅଛ । ନ ହେଲେ କ'ଣ ହେଇଥା'ନ୍ତା ଏ ସାମନ୍ତରାୟ ସାହେବ ଓଗେର୍ ଙ୍କ ଅବସ୍ଥା ? ତମ ବିନ୍ଦୁରେ କିଏ ଏତେ ହେପାଜତ୍ କରିଥା'ନ୍ତା ହାକିମମାନଙ୍କର ?

ବର୍ମାବାବୁ କନ୍ଦା କାନ୍ଥଟାଏ ପରି ଠିଆ ହୋଇଥିଲେ । ଅଟେଣ୍ଡସୁଗିଚ୍ ପରି ନିଶ୍ୱାସ ନେଉଥିଲେ ।

ଭାଇ ! ତମ ସାହେବ, ମେମ୍ ସାହେବମାନେ କ'ଣ କରୁଛନ୍ତି ?

ପିଉଛନ୍ତି ସାର୍ !

ବରୁପାକ୍ଷ ବାବୁ ରହସ୍ୟ କରି ଜୋର୍‌ରେ ହସିଲେ । କ'ଣ ପିଉଛନ୍ତି ହୋ ? ପାଣି ନାଁ ପଇଡ଼ ?

ଭ୍ୟାଟ ସିକ୍‌ସିଟି ନାଇନ୍ ସାର୍ !

ଆଃ ! କ ନାଁ ନ ଶୁଣେଇଲ ହେ ବର୍ମାବାବୁ ! କୋଉଥାଏ ପିଇଲେଣି ?

ସାର୍ !

ଆରେ ଭାଇ ! କୋଉ ଥାଏ ? ମାନେ କେତେ ବାଟ ଗଲେଣି ? ତଣ୍ଡି ଯାଏ ନାଁ ଗୁଡ଼ ଯାଏ ? ଭାବ ଗମ୍ଭୀର ମଦ୍ୟପାନ ପର୍ବ କୋଉଠି ଯାଇ ପହଞ୍ଚିଲାଣି ?

ବର୍ମା ବାବୁ ଲାଜେଇ ଗଲେ । ଟିକେ ହସି ଦେଲେ ।

"ଭାଇ ! ତମେ ଆମେ ସବୁ ଏକା ଗୋଷ୍ଠୀର ! ମାନେ ନଈ ଏ ପଟରେ ଏସ୍. ଡ଼ି. ଓ., ଏସ୍.ଓ. ଓ ଅରପଟେ ହାକିମମାନେ ? ନାଁ କ'ଣ କହୁଚ ?

ଠିକ୍ କଥା ସାର୍ !

ଆମେ ସବୁ କ'ଣ ମୁଦ୍‌ଫର୍‌କା ?

ମୋଟେ ନୁହେଁ ସାର୍ !

ତା' ହେଲେ ଆମ ପାଇଁ ଆଣ । ଭ୍ୟାଟ୍ ସିକ୍‌ସ୍‌ଟି ନାଇନ୍ ତ ହଜମ୍ କରି ପାରିବୁ ନାହିଁ । ମାନେ···ଆମ ର୍ୟାଙ୍କ୍ ପାଇଁ ନୁହେଁ । ଆଉ କ'ଣ ଅଛି ?

ବି.କେ ! ଥ୍ରୀ ଷ୍ଟାର୍ ! ବିଅର୍ ବି···

ବିଅର୍ ଗୁଡ଼ ହେ ! ବି.କେ. ଆଣ ! ତମ ଏସ୍.ଡ଼ି.ଓ. ତ ବାବାଜୀ ! ପ୍ରନ୍ ଆଣ, କ୍ୟାଜୁ ଆଣ, ଚଢ଼େଇ ମାଂସ କ'ଣ ଅଛି ?

ଅଛି ସାର୍ !

କୋଉ ଅବସ୍ଥାରେ ?

ଓ୍ୱାଃ । କଷା ମାଂସ, ପ୍ରନ୍, କ୍ୟାଜୁ ଓ ବି.କେ. ! ସୁମନ୍ତ ବାବୁ ! ଟିକେ କଷା ମାଂସ ହଉ !

ନାଇଁ ଆଜ୍ଞା ! ମୁଁ କିଛି ଖାଇବି ନାହିଁ ।

କାହିଁକି ? କି ଅସୁବିଧା ? ହୋଷ୍ଟ ଦେବେ ଅଥଚ ଖାଇବେ ନାହିଁ ! ଓ କେ. ! ମୁଁ କାଲୁ ଭାଇ ସୁବୁ କୋଠା ନେଇ ଯାଇ ଛାଡ଼ିବି ।

ଡିଙ୍କସ୍ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଆସିଗଲେ ।

ସାମାନ୍ୟ ପିଉ ପିଉ ଓ ଟୋଷ୍ଟ ଏକ୍ସପ୍ରେସ୍ ଟାଣ୍ଡ ଟାଣ୍ଡ ସେଇ ହାଲୁକା ଝୁଲା ପଇନରେ ବିରୂପାକ୍ଷବାବୁ କହିଲେ, କୋଉଠି ଗୁଡାଥିଲି ତ !

ହଁ···ସେଇ ପ୍ରଥମ ପୋଷ୍ଟିଂର କଥା । ଚିଫ୍ ଇଞ୍ଜିନିୟର ଡାକିଥିଲେ ତାଙ୍କ ଘରକୁ । ଗୋଟିଏ ଜରୁରୀ ଫାଇଲ୍ ନେଇ ଯିବାର ଥିଲା । ସ୍ୱଭରେ ମୁଁ ଘଡ଼ିରେ କରି ଦେଇଥିଲି କାମଟା । ଏ.ଜି. ଛକରୁ ରାଜ ଭବନ ଗଲାବେଳେ ବାଁ ପଟେ ଯୋଉ ବଡ଼ ବଡ଼ ବଙ୍ଗଳା, ସେଇଥିରେ ରହୁଥିଲେ ଚିଫ୍ ।

ସକାଳ ଠିକ୍ ଆଠଟା ବେଳେ ଶ୍ୱଶୁରଙ୍କ ପ୍ରଦତ୍ତ ଭେସ୍ପା ସ୍କୁଟର୍‌ଟାରେ ସବାର୍ ହୋଇ ପହଞ୍ଚିଗଲି । କୃଷ୍ଣଚୂଡ଼ା ଗଛମୂଳେ ପାର୍କ କରି ଗୋଟାଏ ଫିଲ୍ମିକ୍ ଷ୍ଟାଇଲ୍‌ରେ ଏଣ୍ଟ୍ରି ଦେଲି । ସେତେବେଳକୁ ତାଙ୍କ ବାରଣ୍ଡାରେ ଦର୍ଶନାଭିଳାଷୀମାନେ ଭିଡ଼ ବାନ୍ଧି ସାରିଥିଲେ । ଲମ୍ବା ବାରଣ୍ଡାରେ ଧାଡ଼ି ମାରି ଚେୟାର୍ ପଡ଼ିଥିଲା । ସେମାନେ ତା' ଉପରେ ନୀରବରେ ଧ୍ୟାନ କଲା ପରି ବସି ରହିଥିଲେ ।

ହ୍ୱାଇଟ୍ ସିମେଣ୍ଟରେ ରେଡ୍ ଅକ୍ସାଇଡ୍ ମିଶା ଚଟାଣ ଚକ୍ ଚକ୍ କରୁଥିଲା ଅଳ୍ପ ସମୟ ଆଗରୁ ପଲିଶ ହୋଇଥିଲା ବୋଧହୁଏ ।

ଚମଡ଼ା ଯୋତାକୁ ମଚ୍ ମଚ୍ କରି ମୁଁ ସିଧା ବୈଠକ ଖାନା ଭିତରକୁ ଚାଲିଗଲି ଓ ସୋଫା ଉପରେ ଗୋଡ଼ ଛକି କରି ବସି ରହିଲି । ଅଳ୍ପ ସମୟ ପରେ ଭୃତ୍ୟଟିଏ ଆସିଲା । ମତେ ପ୍ରଶ୍ନ ବାଚକ ଦୃଷ୍ଟିରେ ଚାହିଁ ରହିଥିଲା ।

ପଚାରିଲି, "ଚିଫ୍ କ'ଣ କରୁଛନ୍ତି ?"

ବାଥ୍ ରୁମ୍‌ରେ !"

"ବାହାରିଲେ କହି ଦେବ, ମୁଁ ବିରୂପାକ୍ଷ ଦାସ ଆସିଛି ।"

"ଖାଲି ସେତିକି କହିବ ?"

"ବିରୂପାକ୍ଷ ଦାସ । ଆସିଷ୍ଟାଣ୍ଟ ଇଞ୍ଜିନିୟର୍ !"

ଭୃତ୍ୟ ଓଠରେ କେମିତି ଟିକେ ହସ ଚହଟିଲା । ସେ ବୋଧହୁଏ ଫେକିନା ହସି ଦେଇଥାନ୍ତା କି କ'ଣ, ରୁମ୍‌ରୁ ତରବରରେ ବାହାରି ଗଲା ।

ପୁଣି କିଛି ସମୟ ବିତିଗଲା ।

ଭୁବନେଶ୍ୱରର ଖୋଦ୍ ଏସ୍.ଡ଼ି.ଓ. ପ୍ରଚେମ୍ପାତି ଗ୍ୱଧି ବାବୁ ଆସି ପହଞ୍ଚିଲେ । ପୋଖତ ପାକଳ ଲୋକ । ଚପ୍‌ଙ୍କର ଅନୁଗତ, ବିଶ୍ୱସ୍ତ । ସେ ସବୁ କଥା ଜାଣନ୍ତି । ବୁଢ଼ା ବୟସରେ ଚପ୍‌ଙ୍କର ଯେତେକ ସେକ୍ସ୍ ଉଇକ୍‌ନେସ୍‌ଠାରୁ ଆରମ୍ଭ କରି ବଗିଚାରେ କେତେ ନଡ଼ିଆଗଛ, ପୋଖରୀରେ କେତେ ଯାଆଁଳ, ଚାନପୁଅ ଷ୍ଟଣ୍ଟ୍ ଲାଇଟିସ୍ ପାଇଁ କେତେ କଷ୍ଟ ପାଉଛି, ସ୍ତ୍ରୀଙ୍କର ମାନସିକ ଯନ୍ତ୍ରଣା କେତେ ଗମ୍ଭୀର ଇତ୍ୟାଦି ଇତ୍ୟାଦି ।

ଗ୍ୱଧି ବାବୁ କବାଟ ଫାଙ୍କରେ ମତେ ଡ଼ାକିଲେ । ଆଜ୍ଞା ! ଟିକେ ବାହାରକୁ ଆସନ୍ତୁ !

ମୁଁ ବାହାରି ଆସିଲି । "କ'ଣ ଖବର ଗ୍ୱଧିବାବୁ ?"

ଗ୍ୱଧିବାବୁ କହିଲେ, "ସେଠି କ'ଣ ବସିଗଲେ ?"

"ଆଉ କୋଉଠି ବସିଥା'ନ୍ତି ?"

"ଏଠି, ବାହାର ବାରଣ୍ଡାରେ ।"

"କାହିଁକି ?"

"କାହିଁକି ?" ଗ୍ୱଧିବାବୁ ଟିକେ ହସିଦେଲେ । "ହଁ । ସେମିତି କିଛି ନୁହେଁ । ରୀତି ରିୱାଜ ସେମିତି । ମାନେ ··ଏଠିକାର ଚଳଣିଟା ସେଇ ପ୍ରକାରର ।"

"ତେବେ ··ଏଠି କେହି ବୈଠକ ଖାନାରେ ବସନ୍ତି ନାହିଁ ?"

ଗ୍ୱଧିବାବୁ ଏଥର ମତେ ଗୋଟାଏ କଣକୁ ଡ଼ାକି ନେଲେ, ଚୁପ୍ ଚୁପ୍ କହିଲେ, ଠିକ୍ ସେଇଆ ନୁହେଁ । କିନ୍ତୁ···ବୈଠକଖାନାଟା ବିଶେଷବ୍ୟକ୍ତିଙ୍କ ମାନଙ୍କ ପାଇଁ ନୁହେଁ ।

ଟିକେ ବୋଧହୁଏ ନିଶା ଲାଗି ଆସି ଯାଇଥିଲା ବିରୂପାକ୍ଷ ବାବୁଙ୍କୁ । ସେ ଥ:ଳ ଦେଇ ଦେଇ ହସିଲେ । "ଆମେ ସବୁ ସେଇ ବିଶେଷବ୍ୟକ୍ତିଙ୍କ ମନୀଷୀମାନେ ।"

ତା' ପରେ ପୁଣି ଗ୍ୱଧିବାବୁ କହିଲେ, ଦେଖୁଛନ୍ତି ଏଠି ବସିଥିବା ସବୁ ମଣିଷଙ୍କୁ ? କାହା ଗୋଡ଼ରେ ଜୋତା ଅଛି ? ଚଟାଣ ପଲିସ୍ ହୋଇଛି କ'ଣ ଆପଣଙ୍କ ଜୋତା ପାଇଁ ? ଜୋତାଟା ବ ପୋର୍ଟିକୋ ତଳେ ଓହ୍ଲାଇ ଆସନ୍ତୁ । ହାକିମଙ୍କ ଘରକୁ ଜୋତା ଖୋଲି ଆସିବାକୁ ପଡ଼େ ମଧର ପଣ ।

ସେଇ ଦିନଠୁ ଦୀକ୍ଷା ପାଇଗଲି । ଆଗରୁ ରାଗିଗଲେ ଯେମିତି କାନମୂଳ ଅଣ୍ଡ ଉଠୁଥିଲା, ନିଃଶ୍ୱାସରେ ନିଆଁର ହୁଲ ବାହାରୁଥିଲା ସେ ସବୁ ଥମି ଯାଇଛି ।

ସହିଁଯା ମୁଁ ଶିଖି ଯାଇଛି ।

"ଆରେ ହେଃ ହମିଦ୍ ଭାଇ ।" ବିରୁପାକ୍ଷ ବାବୁ ପୁଣି ଡାକ ପକେଇଲେ । ହମିଦ୍ ମିଆଁ ବଡ଼ ରସିକ । ବୁଝିଲେ ? ହାଁ କାନରେ ଲକ୍ଷ୍ନୌ ଅତର ଭିଜା ତୁଳା ଖଣ୍ଡେ ଲଗିଥିବ ନିଶ୍ଚେ ।

"ଆଟେବ ହେ ପଢତ !"

ହାଫ୍ ପ୍ୟାଣ୍ଟ୍ ପିନ୍ଧା ସେକ୍ସନ୍ ପିଅନ୍ ପଢତ ଦଉଡ଼ିଲା କରିନ୍ ବାରଣ୍ଡାରୁ ।

"କ'ଣ ସବୁ କରୁଚ ବେ ! ଏଠୁ ସବୁ ସରିଲାଣି । ତମେ ଖାଲି ବ୍ୟସ୍ତ ସେଇଠି ।"

ଆଜ୍ଞାଚ ସାର୍ !

ଆଜ୍ଞାଚ କ'ଣ ? ଡବଲ୍ ଅପ୍ ! ଶୁଣ୍ ! ଯୋଡ଼ାଏ ଜଳପ, ପ୍ରନ୍, ଚଢେଇ ମାଂସ ।

ଆପଣ କ'ଣ ଟିକେ ବି ଚାଖିବେ ନାହିଁ ଡ୍ରିଙ୍କସ୍ ସୁମନ୍ତ ବାବୁ ? ଆରେଃ ଜାତ ଚାଲିଯିବ ନାହିଁ ମ !

ସୁମନ୍ତ କହିଲେ, ମତେ କ୍ଷମା କରନ୍ତୁ ଭାଇ !

ଓ. କେ., ଓ. କେ. ଏକ୍ସକ୍ୟୁଜ୍ଡ । କିନ୍ତୁ ମୋ କଥା ଆପଣଙ୍କୁ ଶୁଣିବାକୁ ପଡ଼ିବ । ଏତେ ଚମତ୍କାର ନୀରବ ଶ୍ରୋତା ମୁଁ ମୋ' ଜୀବନରେ କେବେ ବି ପାଇନି ।

ହାଁ ...କୋଉଠି ଛାଡ଼ିଥିଲି ତ !

ସବୁ ଶିଖି ଯାଇଛି । ଏମିତିକି ଟପ୍ ବସ୍‌ଙ୍କ ପତ୍ନୀଙ୍କୁ ପ୍ରେମ କରିବା ମଧ୍ୟ । ନାଁ ପଚାରନ୍ତୁ ନାହିଁ । ଏଠି ନୁହେଁ ...ଅନ୍ୟଠି ।

ଅନେକ ଓଠ ଦେଖିଛି । ବକୁଳ ପତ୍ର ...ପୁଣି ଦରଫୁଟା କଢ଼ି ପରି... ଗୋଲାପର ପାଖୁଡ଼ା ପରି...

ଯେତେ ହାକିମ ଦେଖିଛି କିନ୍ତୁ, ତା' ଭିତରେ ସାମନ୍ତରାୟ ଚୁରୁଙ୍କ ଚୁଟ୍କି ଖାଇ ! ତା'ର ଉତ୍ତମ କଥନ । ଦ ଗ୍ରେଟ୍ ଟୋନିଂ ଡାଉନ୍ ଡ଼ିଭାଇସ୍ । ଖାବର ଆଦାନ ପ୍ରଦାନ ଚମତ୍କାର । କେବେ ତମେ ଚାଖି ପାରିବନି ତା' ଉପରେ !

ହୁଇସ୍କିର ନିଶାରେ ଧୀରେ ଧୀରେ ଡେକ୍ସନ୍ ହୋଇ ଉଠିଥିଲେ ବିରୂପାକ୍ଷ ବାବୁ । ଗତି ଚାଲିଥିଲେ ଅନର୍ଗଳ ।

ସେଇ ଯୋଉ ଝୁଲି ଡ଼ଙ୍ଗା ! ଦେଖିଛନ୍ତି ଆପଣ ?

କୋଉ ଡ଼ଙ୍ଗା ?

ଝାରସୁଗୁଡ଼ା ଯାଇଥିଲେ ପରା । ମିସେସ୍ ପାଣ ! ଦେଖିଲେ ମନେହୁଏ… ଯେମିତି ସବୁବେଳେ ବୁଡ଼ି ରହିଛି ନଗ୍ନତା ଭିତରେ…ଇନୋସେନ୍ସ୍ । କିନ୍ତୁ… ତା'ର 'ଆବୃତ୍ତ କଲି ପତ୍ର କୋମଳତା…ଆଃ…ସାମନ୍ତରାୟ ଉପରେ ବୁଣି ଚାଲିଛି ଗୋଟାଏ ଅଦୃଶ୍ୟ ଜାଲ ସିଏ…

ମୋ'ର ତ ତାକୁ ଦେଖିଲେ ଖାଇ…ଗ୍ଲାଣ୍ଟା ଏତେ ଜୋର୍ ଉଠେ ପଡ଼େ ଯେ, ମନେ ହୁଏ…ହାଃ…ହାଃ…ହାଃ…

ବିରୂପାକ୍ଷ ବାବୁ ଅସ୍ୱାଭାବିକ୍ ଭାବେ ହସି ଉଠିଲେ ।

ବହୁତ ଅଯତ୍ନାଳ ହେଲା ପରେ ସୁମନ୍ତ କୌଣସି ମତେ ବିରୂପାକ୍ଷଙ୍କୁ ନେଇ ଶୁଆଇ ଦେଲେ ଖଟ ଉପରେ । ସେମିତି ଗୋଡ଼ ଝୁଲେଇ ସେ ଅଚେତ ହୋଇ ପଡ଼ି ରହିଲେ ।

ବାହାରକୁ ଆସିଲେ ସୁମନ୍ତ ।

ଥଣ୍ଡା ପବନ ବୋହୁଛି ।

ସେମାନଙ୍କର ମଦ୍ୟପାନ ତଥାପି ଚାଲିଛି । ଉଚ୍ଚ କଣ୍ଠସ୍ୱର, ଉଲ୍ଲସିତ ଚିତ୍କାର…ଭାସି ଆସୁଛି ବଙ୍ଗଳା ଭିତରୁ…ଏକ ଦୁର୍ଗନ୍ଧିବାୟୁ ପରି ।

ରାତି ଅଧାରୁ ଅଧିକ ବିତି ଗଲାଣି ।

ସୁମନ୍ତଙ୍କ ମନ ଭିତରେ କେମିତି ଏକ ବିଦ୍ରୋହ । ଏକ ଜଡ଼ କ୍ରୋଧ ଜନ୍ମ ନେଇ… ରୂପାନ୍ତରିତ ହୋଇଗଲା ଗୋଟାଏ ନିଷ୍କ୍ରିୟ ହତାଶାରେ ।

ସେ ଚାହିଁ ରହିଥିଲେ ଡ଼ାଇନିଂ ହଲ୍ ଆଡ଼େ ।

( ୭ )

ଅନେକ ଅଭିନନ୍ଦନ । କଥାରେ ଅନ୍ତତଃ । ନୋଡ଼ୁଏ ବନ ଭିତରେ ସବୁ ଯାଇଥିଲା ସବୁ ଇମିଡ଼ିଏଟ୍ ରେଷ୍ଟୋରେସନ୍ କାମ । ସୁମନ୍ତ ଆସୁ ଆସୁ ତାଙ୍କର ସାମର୍ଥ୍ୟ ପ୍ରତିପାଦନ କରିଥିଲେ । ଗୃହ ବନ ଡିପାର୍ଟମେଣ୍ଟାଲ କାମ କରି, କୌଣସି ଠିକାଦାରଙ୍କୁ ନିଯୁକ୍ତ ନ ଦେଇ, ଅଳ୍ପ ଖର୍ଚ୍ଚରେ ପୁଣି ନିର୍ଦ୍ଦିଷ୍ଟ ସମୟ ସୀମା ପୂର୍ବରୁ କାମ ସାରିବା ନିଶ୍ଚୟ ଅଭିନନ୍ଦନୀୟ । ଚିଫ୍ ଇଞ୍ଜିନିୟର ଶ୍ରୀ ମହାନ୍ତି ଗୋଟାଏ ଡ଼ି. ଓ. ଲେଖିଥିଲେ, "ଆଇ କଂଗ୍ରାଚୁଲେଟ୍ ୟୁ "

ଶକ୍ତି ମିଶ୍ର କହିଲେ—"ଭାଇ ! କମାଲ୍ କରି ଦେଲେ ଆପଣ !"

ବସ୍ ପତ୍ନୀ ଶ୍ରୀମତୀ ଉପାସନା ଦେବୀ ତାଙ୍କ ପାତଳ ସୁରଙ୍ଗ ଓଠ ଥରେଇ କହିଲେ, ଏତେ ବନକେ ଜଣେ ନୀରବ କର୍ମୀ ଦେଖିଲି । କଥା କମ୍ କାମ ବେଶୀ । ନ ହେଲେ ଏ ଡ଼ିପାର୍ଟମେଣ୍ଟରେ ଲେକ୍‌ଚର ମାରିବାରେ ସମସ୍ତେ ଓସ୍ତାଦ୍ । ବୁଝିଲେ ନିଦେଇ ! ମନେ ରଖିଲି ପରି ଗୋଟାଏ ଡ଼ିଶ୍ କରି ଖୁଆଇବି ନିଶ୍ଚୟ ।

ପିଡ଼ାପାଲି ପାଖରେ କଣ୍ଟ୍ରାକ୍‌ଟେରର ହେଡ଼ନ କୋଳେଇ ନେଲେ ସୁମନ୍ତଙ୍କୁ । ଗୋଟାଏ ବଡ଼ ବ୍ରିଜ୍ ହୋଇଥିଲା ଏଇ ରାସ୍ତାରେ । ଚଉଦ ଫୁଟ ଗଭୀରର ପାଣି ଠିଆ ହୋଇଥିଲା । କେବଳ ଫରେଷ୍ଟ୍ ଡ଼ିପାର୍ଟମେଣ୍ଟର ଓଜନ୍‌ଦାର ଗାଡ଼ି ସବୁ ଯାଏ । ଭାଇଟାଲ୍ ଲିଙ୍କ୍ ସେମାନଙ୍କ ପାଇଁ । ଉଚ୍ଚ ଘଞ୍ଚ ଶାଳ ଜଙ୍ଗଲ । ପାଖା ପାଖି ଠିଆ ହୋଇଥିବା ଅସରନ୍ତି ଗଛ । ଦିନବେଳା ସୂର୍ଯ୍ୟାଲୋକ ପଡ଼େ ନାହିଁ । ଜଙ୍ଗଲିଆ ଜୀବ ଜନ୍ତୁରେ ଭରପୂର ।

ସନ୍ଧ୍ୟା ହୋଇଗଲେ ଘୋଟି ଆସେ ନିବୁଜ ଗର୍ଭଶସ୍ୟ ପରି ଅନ୍ଧାର ।

ଏମିତି ଯେ କେହି ଇଞ୍ଜିନିୟର ଏପରି ଏକ ଯାଗାରେ ରାସ୍ତା ସଜାଡ଼ି ଦେବେ ଏତେ ଶୀଘ୍ର ତା' ଥିଲା କଣ୍ଟ୍ରାକ୍‌ଟେର୍ ପଣ୍ଡା ସାହେବଙ୍କ କଳ୍ପନାର ବାହାରେ ।

ସୁମନ୍ତ କିଛି ସାନ୍ତ୍ୱନା ପାଇଥିଲେ । ପାଇଥିଲେ କିଛିଟା ସନ୍ତୋଷ । ଦେଖୁଥିଲେ ନିଜ ହାକିମମାନଙ୍କର ଆଲୋକିତ ଗୋଟିଏ ପାଖ । ସେ ବା କେମିତି ଜାଣନ୍ତେ ଅନ୍ୟପଟେ ରହିଛି ଅସରନ୍ତି ଅନ୍ଧାର ?

ପୂଜା ଛୁଟି ଖୁବ୍ ପାଖେଇ ଆସିଥାଏ । ସନ୍ଧ୍ୟା କେତେବେଳୁ ଉତ୍ତୀର୍ଣ୍ଣ ହୋଇ ସାରିଥାଏ । ସୁମନ୍ତ ଏକା ଏକା ବସିଥା'ନ୍ତି ଅଫିସ୍‌ରେ । ଷ୍ଟୋର୍-ଗାର୍ଡ଼, ବାହାରର

ପରିବେଶ, ସବୁ ଯେମିତି ଶୋଇ ପଡ଼ିଥାଏ ଶୀତ ବଜନଆ ନଈକିଏ ପରି । ସବୁଠି ନୀରବତା । ମାଛ କାତିଆ ମେଘ ସେପଟେ ଆକାଶରେ ଝୁଲୁଥାଏ ଦା' ପରି ଜହ୍ନ ।

ସୁମନ୍ତଙ୍କୁ କେମିତି ଦ୍ୱାଲୁକା ଲାଗୁଥିଲା ।

ଟେଲିଫୋନଟା ବାଜି ଉଠିଲା ।

ଆରପଟେ ଏମ୍.ଏଲ୍.ଏ.ଙ୍କ କଣ୍ଠସ୍ୱର ।

ପ୍ରଥମେ ତାଙ୍କ ଆଡ଼ୁ ନମସ୍କାର କରି ସେ ପ୍ରଶଂସାରେ ପୋତି ପକେଇଲେ ସୁମନ୍ତଙ୍କୁ । ଦେଶ ଏମିତି ଇଞ୍ଜିନିୟରଙ୍କୁ ଗୁହେଁ । ଆମେ ଗର୍ବୀତ । ସେ ଇଲାକାକୁ ତ ଭଲ ଅଫିସର୍ ପ୍ରାୟ ଆସୁ ନାହାନ୍ତି । ସମସ୍ତେ ଆଜ୍ଞା ରହୁଲେ ଉପକୂଳବର୍ତ୍ତୀ ଅଞ୍ଚଳରେ ।

ତା' ଛଡ଼ା ଏବେ ଆଉ ସଚ୍ଚୋଟ ଲୋକ କାହାନ୍ତି ?

ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ ।

ହଁ, ଆପଣଙ୍କୁ କାହିଁକି ଡାକଥିଲି କି ! ଏଇ···ପିଲାମାନଙ୍କ କଥା ! ସେମାନେ ମତେ ବସେଇ ଉଠେଇ ଦେଉ ନାହାନ୍ତି । ମିଶ୍ର ସାହେବ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ଦସ୍ତାରୁ କାମ ଖଣ୍ଡେ ଖଣ୍ଡେ ପାଇଥିଲେ । କୋଉଠି ଟିକେ ମୁରମ୍ ପକେଇବା, ରାସ୍ତା ମରାମତି କରିବା କାମ ଏଫ୍.ଡ଼ି.ଆର୍.ରେ । ସେ ଅବଶ୍ୟ ଆପଣ ଆସିବା ପୂର୍ବ କଥା । ଆପଣ ତ ସବୁ କନେ କଲେ ଡିପାର୍ଟମେଣ୍ଟାଲ୍ । ଭଲ କଥା । ସରକାରଙ୍କର ଲାଭ ହେଲା । କାମ ମଜବୁତ୍ ହେଲା । ଟାଇମ୍‌ରେ ସରିଲା ।

ହେଲେ···ପିଲାମାନଙ୍କର ପଇସାଟା ସେମାନଙ୍କୁ ଦେଇ ଦିଅନ୍ତେ କି ନା !

ସୁମନ୍ତ କହିଲେ, ମୁଁ ତ ବିଲ୍ କରି ରଖିଛି । ସେମାନେ ନେଇ ନାହାନ୍ତି ଯେ !

ଆରପଟେ ପରିହାସ କଲା ପରି ହସିଲେ ଏମ୍.ଏଲ୍.ଏ. "ବିଲ୍ କରି ରଖିଛନ୍ତି ?"

ଆଜ୍ଞା, ହଁ !

ସତରେ ! କେତେ ଦସ୍ତା ଆପଣଙ୍କର !

ମୁଁ ବୁଝି ପାରିଲି ନାହିଁ ।

"ବୁଝି ପାରିଲେ ନାହିଁ ? ପୁଣି ଥରେ ହସିଲେ ଏମ୍.ଏଲ.ଏ. । ଏଥିରେ ବୁଝିବାରେ କ'ଣ ଅଛି ? ସେମାନେ ଆପଣଙ୍କ ସହିତ ଆଗ୍ରିମେଣ୍ଟ୍ ଦସ୍ତଖତ କରିଛନ୍ତି କେତେ ଟଙ୍କାର ?"

ଦଶଟା ଆଗ୍ରିମେଣ୍ଟ୍ । ପାଞ୍ଚ ହଜାର ଟଙ୍କା ପ୍ରତ୍ୟେକ । ପଚ୍ଚଶ ହଜାର ଟଙ୍କା ।

ବାଃ ! ଭେରି ଗୁଡ୍ ! ସେତକ ଟଙ୍କା ସେମାନେ ପାଇଗଲେ, ତାଙ୍କର ଆଉ କିଛି ଆପତ୍ତି ନାହିଁ ।

କିନ୍ତୁ···ଆଗ୍ରିମେଣ୍ଟ୍ମାନେ ତ ବିଲ ନୁହେଁ ! ସେମାନେ ଯେତକ ଟଙ୍କାର କାମ କରିଛନ୍ତି, ସେତକ ବିଲ୍ ହୋଇଛି ।

କେତେ ଟଙ୍କା ?

ସମୁଦାୟ ଛ' ହଜାର ଟଙ୍କା !

ଆଶ୍ଚର୍ଯ୍ୟ । ଏତେ କମ୍ କେବେ ହୋଇ ପାରେ ନାଁ ।

ମୁଁ ତ ନିଜେ ଚେକ୍ ମେଜରମେଣ୍ଟ୍ କରିଛି ।

ବର୍ମାବାବୁ କେତେ ଟଙ୍କାର ବିଲ୍ କରିଥିଲେ ?

ସେଥିରୁ କ'ଣ ମିଳିବ ? ମୁଁ ବର୍ତ୍ତମାନ ଯାହା କରିଛି ସେଇଟା ଠିକ୍ ।

ପୁଣି ପରିହାସ କଲେ ଏମ୍.ଏଲ୍.ଏ. "ଏମିତି ତ ଆପଣ କରିବା ଠିକ୍ ନୁହେଁ ସୁମନ୍ତ ବାବୁ !

ସ୍ୱୀକାର କରୁଛି, ସାରା ଦେଶ ଯେତେବେଳେ ବିଦ୍ରୋହ କରି ଉଠି ଦେଇ ଅନେଷ୍ଟି କୁ···ଅନେଷ୍ଟି ଯାଇ ଛପି ଯାଇଛି ଆପଣଙ୍କ ଗ୍ରନ୍ଥ ଭିତରେ ! କିନ୍ତୁ ଭାଇ···କିଛିଟା କମ୍ପ୍ରୋମାଇଜ୍ ଦରକାର । ପ୍ରତିଟି କ୍ଷେତ୍ରରେ ।

ମୁଁ ସେମାନଙ୍କୁ ଆପଣଙ୍କ ପାଖକୁ ପଠାଉଛି । ସେମାନେ ରୁଲିଂ ପାର୍ଟିର ଲୋକ । ଆଉ ମନେ ରଖନ୍ତୁ ! ଆପଣଙ୍କର ଏଫ୍.ଡ଼ି.ଆର୍. ପାଇଁ ଏ ଟଙ୍କା ମୁଁ ଚେଷ୍ଟା କରି ଆଣିଛି । ଆପଣଙ୍କର ବହୁତ ସେଭିଂ ଅଛି । ପିଲାମାନଙ୍କର ପାଉଣା ଦେବା ପାଇଁ ବାସ୍ତବରେ କିଛି ପ୍ରତିବନ୍ଧକ ନାହିଁ । ଏସ୍.ଓ. ରାଜି । ଶକ୍ତି ମିଶ୍ରଙ୍କର ମଧ୍ୟ ଆପତ୍ତି ନାହିଁ । ଦୟାକରି କିଛି ଗଣ୍ଡଗୋଳ କରନ୍ତୁ ନାହିଁ ।

ଆଉ ଗୋଟାଏ କଥା ମୁଁ ଆପଣଙ୍କୁ କହି ଦେଉଛି । ସେମାନେ ଭଲ ପିଲା । ପାର୍ଟି ପାଇଁ ଅନେକ କାମ କରିଛନ୍ତି । କିନ୍ତୁ ରକ୍ତ ଟିକିଏ ଗରମ । ସେଇଟା ସେମାନଙ୍କର ବୟସର ଦୋଷ ।

ଯଦିଓ ସେମାନେ ସେମିତି ନୁହଁନ୍ତି, ଆପଣ ହୁଏତ ସେମାନଙ୍କୁ ଭାବି ପାରନ୍ତି ଆତଙ୍କବାଦୀ, ଗୁଣ୍ଡା ବା ଅସାମାଜିକ ମଣିଷ ବୋଲି ।

ମୁଁ ସେମାନଙ୍କୁ ସତର୍କ କରି ଆପଣଙ୍କ ପାଖକୁ ପଠାଉଛି । କିନ୍ତୁ ଟିକେ ବୁଝିବାକୁ ଚେଷ୍ଟା କରିବେ ।

ସୁମନ୍ତଙ୍କୁ ଆଉ କିଛି କହିବାକୁ ସୁଯୋଗ ନ ଦେଇ ଟେଲିଫୋନ୍ ଗୁଞ୍ଜି ଦେଲେ ଏମ୍. ଏଲ.ଏ. ମହାଶୟ ।

ଆଃ···ଏଇ ଏମ୍. ଏଲ୍. ଏ.ଙ୍କୁ ଦୁଇ ଦିନ ତଳେ ଗୋଟାଏ ମହାବିଦ୍ୟାଳୟର ବାର୍ଷିକ ଉତ୍ସବରେ ଦେଖିଥିଲେ ସୁମନ୍ତ । ଅଳପ ଅଳପ ହସ । ସମସ୍ତଙ୍କୁ ଆଗରୁଆ ନମସ୍କାର । ଆଲୋକର ଉଦ୍‌ବେଳିତ ସମୁଦ୍ର ଭିତରେ, ମଞ୍ଚ ଉପରେ, କି ଚମତ୍କାର ଦିଶୁଥିଲେ ସେ, କୁମ୍ଭପକା ଧୋତି, ପଞ୍ଜାବୀ, ସୁନା ଫ୍ରେମର ଚଷମା ।

ପ୍ରଧାନ ଅତିଥି ଏମିତି ନ ହେଲେ ମଞ୍ଚ କି ଶୋଭା ଦିଶେ !

ବକ୍ତୃତାରେ କହିଥିଲେ, ଆପଣମାନେ ହିଁ ଏ ଦେଶର ଭବିଷ୍ୟତ । ଯଦି ଦେଶକୁ କିଏ ବଞ୍ଚେଇ ପାରିବେ, ସେମାନେ ହେଲେ ଛାତ୍ର ସମାଜ । ପ୍ରଧାନ ମନ୍ତ୍ରୀଙ୍କ ହାତମୁଠାକୁ ଟାଣ କରିବେ ଆପଣମାନେ ! ···ଚରିତ୍ର ଓ ଆତ୍ମାର ସ୍ୱତନ୍ତ୍ରତା ପ୍ରୟୋଜନ···ଏମିତି ଅନେକ କଥା ।

ସତରେ ! ସାରା ଦେଶଟାକୁ ଯୋଉମାନେ ନର୍କକୁ ନେଇ ଯାଉଛନ୍ତି, କି ସୁନ୍ଦର ବକ୍ତୃତା ସେମାନେ ଦେଇ ପାରନ୍ତି ! କି ଚମତ୍କାର ଭାବେ ସଜେଇ ପାରନ୍ତି କଥାକୁ । ହସିଲେ ସୁମନ୍ତ ମନେ ମନେ । ଭ୍ରଷ୍ଟର ଭ୍ରଷ୍ଟାଚାର ବିରୁଦ୍ଧରେ ବକ୍ତୃତା ।

ସଂସାରଟା ସେଇମିତି ତ ଚାଲିଛି ।

ସେଦିନ ପ୍ରେକ୍ଷାଗୃହରୁ ବାହାରି ଆସିବାବେଳେ ବିରୂପାକ୍ଷ ବାବୁ କହୁଥିଲେ, ଭାଇ ! ଏମ୍. ଏଲ୍. ଏ. ଆମର କଳାପ୍ରେମୀ । ଯେତେ ବାର୍ଷିକ ଉତ୍ସବ ଯୋଉଠି ହେବ, ସେ ତା'ର ଉଦ୍‌ଘାଟକ । ଝୁମା ମଣିଷଟାଏ ତ !

ଆପଣ ଜାଣିଛନ୍ତି ? ଏମ୍. ଏଲ୍. ଏ. ହେବା ଆଗରୁ ତାଙ୍କର ଗୋଟାଏ ଯାତ୍ରା ଦଳ ଥିଲା । ଏ ଅଞ୍ଚଳର ବିଖ୍ୟାତ ପାର୍ଟି । ସେ ଯାତ୍ରା ଦଳରେ "ଝିଅ ବାହାଘର ମା' ଚଉଠି", "ଆଗରେ ଡାଳି, ପଛଟା ମେଳି", "ତା ଥେଇ ଥେଇ", "ପୁଅ ଚୂଡ଼ା କୁଟି ମା' ନାଗର" ଆଦି ବିଖ୍ୟାତ ସାମାଜିକ ନାଟକ ସବୁ ମଞ୍ଚସ୍ଥ ହୋଇ ଏମ୍. ଏଲ୍. ଏ.ଙ୍କୁ ବହୁ ସୁନାମ ଆଣି ଦେଇଥିଲା ।

ଏଯାଏ କେମିତି ତାଙ୍କ ସହିତ ଆପଣଙ୍କର ପରିଚୟ ହୋଇ ନାହିଁ ?

ସୁମନ୍ତଙ୍କ ଚିନ୍ତାରେ ବାଧା ଦେଇ ଆତଙ୍କବାଦୀମାନେ ପହଞ୍ଚି ଗଲେ ।

ସବୁଠାରୁ ବୟସ୍କ ଆତଙ୍କବାଦୀଙ୍କ ବୟସ ପଚିଶ ଭିତରେ ହେବ । ତାଙ୍କ ମୁହଁରେ ଅନାବନା ଦାଢ଼ୀ, ଅଧା ଖୋଲା ଗୁଡି । ନମସ୍କାର କଲା ପରେ ସେ ନିର୍ବିକାର ଭାବରେ ଶେଷ ଚେୟାର୍‌ଟାରେ ବସି ପଡ଼ି ଝରକା ବାଟେ ଆକାଶକୁ ଚାହିଁ ରହିଲେ ।

ହଠାତ୍ ସେପଟେ ଶଙ୍କାଗ୍ରସ୍ତ ପିଅନଟା ହନ୍ତସନ୍ତ ଭ୍ରୁଇଟିଏ ପରି ସ୍ଥିର ଓ ନିଶ୍ଚଳ ହୋଇ ଯାଇଥିଲା ।

ସେମାନେ ସେମାନଙ୍କର ପରିଚୟ ଦେଲେ ।

ପରିମଳ ବନ୍ଧ୍ୟୋପାଧ୍ୟାୟ ।

ମାର୍କଣ୍ଡ ହୋତା ।

ସତ୍ୟନାରାୟଣ ଗୁରୁ ।

କିଛି ନାହିଁ ସାର୍ ! ଟିକିଏ ସାକ୍ଷାତ କରିବାକୁ ଆସିଲୁ । ଏମ୍. ଏଲ୍.ଏ. ତ ହୋଇଥିବେ । ଆମ କଥା ବୁଝିବେ ବୋଲି ଆଶା ।

ମାସେ ପରେ ପୁଣି ଆପଣଙ୍କୁ ସାକ୍ଷାତ କରିବୁ । ମାସଟିଏ ସମସ୍ତ ବୋଧହୁଏ ସିଦ୍ଧାନ୍ତ ନେବା ପାଇଁ ଯଥେଷ୍ଟ ହେବ ଆପଣଙ୍କ ପାଇଁ ?

ତିନି ଜଣ ଯାକ ଏକା ସାଙ୍ଗରେ ଉଠି ଉପହାସ କଲା ପରି ଗୃହିଣୀ ଗୋଟାଏ ଗୋଟାଏ ନୋପାଲ୍ଲି ଦେଇ ଜୋତା ମଚ୍ ମଚ୍ କରି ବାହାରି ଗଲେ ।

## ( ୮ )

"...ସେ କ୍ଷତ କ'ଣ କେବେ ବି ଭରିପାରେ ?

ସେ ଯେ ଗୁପ୍ତ ଭିତରର ଯନ୍ତ୍ରଣା !

ଜାଣେ, ତମର ମୂଲ ଦେବାପରି କଉଡ଼ି ମୋ' ପାଖରେ ନାହିଁ, କିନ୍ତୁ ..ତମ ପାଇଁ ମୋ'ର ଯେ ଅନ୍ତହୀନ ପ୍ରତୀକ୍ଷା...ଚିରନ୍ତନ ଆକର୍ଷଣ । କାହିଁ ମୋ'ର ମୁକ୍ତି ସେଥିରୁ ?"

ଝାରସୁଗୁଡ଼ା ବଙ୍ଗଳାରେ ନିଜ ସୁଟ୍ ଭିତରେ ଏକା ଏକା ବସି ପଢ଼ୁଥିଲେ, ସୁମନ୍ତ, ରେଖାର ଛ' ପୃଷ୍ଠାର ଲମ୍ବା ଚିଠି ।

"ଜୟନ୍ତ ଭାଗ୍ୟବାନ୍ । ସେ ଭାଗ୍ୟବାନ । ପାରିବ ଗୃହିଣୀ ଭିତରେ ଆଣୁଏ ଲୁଚିଥିବା ଝିଅଟିଏ ପାଇଛନ୍ତି ସେ ! ଆଇ ଆମ୍ ଓ୍ୱନ୍ଲି କ୍ୟାପେବ୍ଲ ଅଫ୍ କାର୍ନାଲ୍ ଲଷ୍ଟ୍ସ୍ । ମୁଁ ଚାହେଁ କେବଳ ଦେହଜ, ଜାନ୍ତବ, ମାଂସଳ ପ୍ରେମ । ମୋ'ର ସେଇଆ ଦରକାର । ସେ ପବିତ୍ରତାରେ ମୋ'ର ବିଶ୍ୱାସ ନାହିଁ ।

ସେତେବେଳେ ତମରି କଥା ମୁଁ ଭାବୁଥିଲି ସୁମନ୍ତ । ତମ ଭଲ ପାଇବାରେ କପରି ଏକ ଦୂରତା ଥିଲା । ତମେ'ଇ କେବଳ ଦେଖି ପାରୁଥିଲ ମୋ' ମନର... ଗହନ ଗୋପନରେ ଥିବା...ସୌନ୍ଦର୍ଯ୍ୟକୁ ।

ତାଙ୍କୁ ଏମିତି ବଳଙ୍କାରେ ଅତଳାନ୍ତ ଗହ୍ୱରରୁ ଟାଣି ଆଣି ଅନାବୃତ କରି ଦିଅନ୍ତି ଜୟନ୍ତ ଯେ···ସବୁ କିଛି ଲାଗେ ଯେମିତି ବିଭତ୍ସ ।

ସତରେ ସେ ଏକ ଅଜବ୍ ମଣିଷ । ସେ କୁହନ୍ତି, ନୀତି, ନିୟମ, ଏସବୁ ବେକାର୍ କଥା । ଧର୍ମ ହେବା ଗୋଟାଏ ଖିଅଲ୍ ଫନ୍ ।

ଆମ ଘରେ ଅନେକ ପାର୍ଟି ହୁଏ । ଖର୍ଚ୍ଚ ବାର୍ଚ୍ଚର ହିସାବ ବୁଝେନାଁ । ପଇସା କୋଉଠୁ ଆସେ, ମୁଁ ଜାଣି ପାରେ ନାଁ । ଜାଣିବାକୁ ଚାହେଁନା ମଧ୍ୟ । ଯେତେ ଦାମ୍ ହେଉ, ମୁଁ ଯାହା ଚାହେଁ ଏଠି କିଣି ପାରେ, କରି ପାରେ । କୌଣସିଥିରେ ବାଧା ବନ୍ଧନ ନାହିଁ ।

ଭୁବନେଶ୍ୱରରେ ଆମର ଘର ତିଆରି ଆରମ୍ଭ ହେଇଛି ।

···ତମେ କୁହନାଁ···ସୁଖ ଏକ ମାନସିକ ବୃତ୍ତି ବୋଲି ? ସୁଖି ରହିବା ନ ରହିବା ମଣିଷର ନିଜ ଉପରେ ନିର୍ଭର କରେ । ନିର୍ଭର କରେ ତା'ର ମାନସିକତା ଉପରେ !

କିନ୍ତୁ···ସୁମନ୍ତ ! ଜୀବନରେ···ଭୌତିକ ସୁବିଧା ସୁଯୋଗରୁ ମିଳୁଥିବା ଆନନ୍ଦ କ'ଣ ସୁଖ ନୁହେଁ ?

ତମେ ଯେମିତି ମୋ' ପାଇଁ ଏକ ପ୍ରହେଳିକା, ସେ ବି ସେମିତି ମୋ' ପାଇଁ ଆଉ ଏକ ପ୍ରହେଳିକା । ତାଙ୍କ ବାଟରେ ସେ ଥାଆନ୍ତି । କାହାର ମତାମତ, ଆକ୍ଷେପ ବା ମନ୍ତବ୍ୟକୁ ସେ ଖାତିର୍ କରନ୍ତି ନାହିଁ । କେତେବେଳେ ତାଙ୍କ କଥାରେ କୌତୁକ ତ ପୁଣି କେତେବେଳେ ଅହଙ୍କାର, ଅବଜ୍ଞା, ବା ତାଚ୍ଛଲ୍ୟ । ମୋ'ର ତ ବେଳେବେଳେ ମନେହୁଏ କିଛି ବି ତାଙ୍କୁ ବାସ୍ତବ ଆନନ୍ଦ ଦେଇ ପାରେ ନାହିଁ, ବା ଦେଇ ପାରିବ ନାହିଁ ମଧ୍ୟ । ସେ ହୁଏତ ଜୀବନରେ କୌଣସି ବିଷୟକୁ ଓଜନ ଦେଇ ନାହାନ୍ତି, କୌଣସି ଚିନ୍ତା ତାଙ୍କୁ ଗ୍ରାସ କରି ନାହିଁ ।

ମୋର ବଦ୍‌ଖର୍ଚ୍ଚ, ଔଦ୍ଧତ୍ୟ, ଉଭୟଙ୍କୁ ସେ ଯେମିତି ଉତ୍ସାହିତ କରି ଚାଲିଛନ୍ତି ।

···ପୁଣି ସେ କୁହନ୍ତି, ସବୁରି ମୂଳରେ ଯୌନ କାମନା । ଏ କାମନାର ଅନ୍ତ ନାହିଁ । ଯେତେ ଆବେଗ ଝରି ଯାଇଛି ମଣିଷ ମନରୁ, ଯେତେ କୋହ ଉଠିଛି ଛାତି ଭିତରେ, ଯେତେ ଲୁହ ଝରିଛି, ସବୁ ପରର ସ୍ତ୍ରୀ ପାଇଁ, ଅନ୍ୟର ଝିଅ ପାଇଁ···ଯାହା ତମର ହକ୍ ଭିତରେ ନାହିଁ । ଯାହା' ଅନ୍ୟାୟର, ଅଧର୍ମର । ଯାହା ମିଳିବା ସୁବିଧାଜନକ ନୁହେଁ, ତାରି ପାଇଁ ସବୁ ଆକୁଳତା ।

( କ'ଣ ସତ କଥା ? କେଜାଣି… )

ମୁଁ କାହାକୁ ବି ବୁଝି ପାରିଲି ନାହିଁ । ନାଁ ତମକୁ ନାଁ ତାଙ୍କୁ ।

କିନ୍ତୁ…ମୋ' ଭିତରେ କିଛି ଗୋଟାଏ ବ୍ୟାକୁଳ ଆର୍ତ୍ତନାଦ କରୁଛି ସୁମନ୍ତ ! ଆଉ ମୋ'ର ମନେ ହେଉଛି ଏ ଆର୍ତ୍ତନାଦ ବିପଦ ଜନକ । କେଜାଣି, କୋଉଦିନ ବି ହୋଇପାରେ ଭୟଙ୍କର !

ତମେ ତ ଜାଣ ! ମୁଁ ଗୃହଲକ୍ଷ୍ମୀ ନୁହେଁ । ନୁହେଁ ଲକ୍ଷ୍ମଣ ରେଖା ଭିତରେ ବାନ୍ଧି ହୋଇ ରହି ପାରିବା ପରି ନାରୀ । ମୋ'ର ଆନୁଗତ୍ୟ ନାହିଁ ସେ ପରମ୍ପରା ପିଣ୍ଡିତ ବିଶ୍ୱାସ ବୋଧ ପ୍ରତି ।

…ତମେ ସବୁ କୁହ, ଖୋଜିବାରେ ହିଁ ଆନନ୍ଦ ! ପାଇବାରେ ନୁହେଁ । ପାଇଗଲେ ଶେଷ ହୋଇଗଲା ସବୁ କିଛି ! ଜହ୍ନ ଏତେ ସୁନ୍ଦର, ଏତେ କାମ୍ୟ ଏତେ ଲୋଭନୀୟ, କାରଣ ତା'ର ସ୍ଥିତି ଆକାଶରେ । ସେଥିପାଇଁ ଜହ୍ନ ଲାଗି ଅନେକ ଭାବାବେଗ, ଅନେକ କବିତା । ଯଦି ସେ ଝରି ପଡ଼ନ୍ତା ଏ ପୃଥିବୀ ଉପରେ, ତା'ର ମୃତ୍ୟୁ ହୋଇଯା'ନ୍ତା ସିନା !

ମୁଁ ତ ଖୋଜୁଛି…ତମେ କ'ଣ ଖୋଜୁଚ ମତେ ? କେଜାଣି…

ସୁମନ୍ତ ! ସେ ମତେ ବାହା ହୋଇଛନ୍ତି, ପୋଷା ମନେଇ ରଖିବା ପାଇଁ । ମୁଁ ତାଙ୍କ ପାଇଁ ଯେ କୌଣସି ନାରୀ ପରି ନାରୀଟିଏ । ଅନ୍ୟ କିଛି ପ୍ରାଧାନ୍ୟ ମୋ'ର ନାହିଁ ଏଠି ।

ତମେ କେମିତି ଅଛ ? ଗାୟତ୍ରୀ ଅପା ? ସ୍ୱୀକାର କରିବାରେ ଲଜ୍ଜା ନାହିଁ, ଆଜି ମୋ' ମନରେ ତା' ପାଇଁ କେବଳ ବିରାଗ ଛଡ଼ା ଆଉ କିଛି ନାହିଁ । ମୁଁ ତମ ପରି ଉଦାର ନୁହେଁ ।

ସ୍ମୃତି……

ତମେ ବହୁତ୍ ମନେ ପଡ଼ୁଛ…ବହୁତ୍…ବହୁତ୍…ବହୁତ୍…ସତରେ…

କିନ୍ତୁ ଡେରି ନାହିଁ । ଅଳ୍ପ ଦିନ ଭିତରେ ସେ ଯାଉଛନ୍ତି ପ୍ରମୋସନ୍‌ରେ ସମ୍ବଲପୁରର ଏସ୍. ପି. ହୋଇ । ତମକୁ ଦେଖି ପାରିବି ତ ଅନ୍ତତଃ !

ମୋ' ରାଣ ! ଚିଠିଟାକୁ ଚିରିଦେବ ପଢ଼ି ସାରିବା ମାତ୍ରେ ।…"

ଆହୁରି ଅନେକ କିଛି ଲେଖା ଯାଇଥିଲା ସେ ଚିଠିରେ । ସୁମନ୍ତ ଚିଠିଟାକୁ ଚିକି ଚିକି କରି ଚିରି ଦେଲେ ।

ଚଠିଟା ଯେମିତି ତାଙ୍କୁ ଠେଲି ନେଲା ଅତୀତର ସେଇ ଦିନଗୁଡ଼ିକାଙ୍କୁ··· ଅଧା ଖୋଲା ହାତ ଭିତରୁ ଜାଣି ଜାଣି ଖସେଇ ଦେଇଥିବା ମୁହୂର୍ତ୍ତିମାନଙ୍କୁ ପୁଣି ଅଣ୍ଡାଳିବା ପାଇଁ ।

ଗ୍ଭତି ଭିତରର କୋଉ କୋମଳ ତନ୍ତ୍ରୀରେ ବ୍ୟଥାର ସ୍ପର୍ଶ ଲାଗିଲା ।

ଆଖି ଆଗରେ ନାଚି ଉଠିଲା ରେଖାର ଖେଳୁଆଡ଼ି ଗ୍ଭହାଣୀ ।

ସୁମନ୍ତ କ'ଣ ସତରେ ନିଜ ପାଖରୁ ଖସି ପଳେଇବାକୁ ଚେଷ୍ଟା କରୁଛନ୍ତି ପ୍ରତିଟି ମୁହୂର୍ତ୍ତିରେ ? ଏ ଆଦର୍ଶ, ଏ ନୀତି, ଏ ଚଳଣିଧାରା, ଏ ସମ୍ମାନ, ଏସବୁ କ'ଣ କେବଳ ନିଜର ଅପଚୟ ? "ଡ଼ିକ୍ଲାଇନ୍ ଅଫ୍ ଦ ସ୍ୟାଙ୍କ୍ଟିଟି ଅଫ୍ ଇଣ୍ଡିଭିଜୁଆଲ୍" କ'ଣ ଏକ ଆତ୍ମ ପ୍ରତାରଣା ?

କାହିଁକି ନିଜ ଉପରେ ଏମିତି ଆସ୍ଥା ହଜିଯାଏ ବେଳେ ବେଳେ ? କାହିଁକି ନିବୃତ୍ତ କରି ହୁଏନାହିଁ ନିଜକୁ ଘଟଣା ପ୍ରବାହ ଭିତରୁ ? କାହିଁକି ବୁଝି ହୁଏନା ନିଜର ମନକୁ ? ଆପଣାର ଜୀବନ୍ତ ସତ୍ତାକୁ ?

ଏମିତି କ'ଣ ଗୋଟାଏ ଦିନ ଆସିବ···ଚାଲି ପଥରେ ଅନେକ ବାଟ ଗ୍ଭଲିଗଲା ପରେ ସେ ପଶ୍ଚାତାପରେ ଫେରି ଗ୍ଭହିଁବେ ? ହଜେଇ ଦେଇଥିବା ସବୁ କିଛି ପାଇଁ ବିହ୍ୱଳ ବ୍ୟାକୁଳ ହେବେ ? ନିଜକୁ ଅସହାୟ ଅସମର୍ଥ ମଣିବେ ?

ସେତେବେଳେକୁ ବାଲି ପରି ସମୟ ସବୁ ଖସି ସାରିଥିବ ହାତ ପାହାନ୍ତାରୁ । ଆଉ ଥିବ କ'ଣ ?

ସେ ଯେ ଧୀରେ ଧୀରେ ସଂସାରଠାରୁ, ପରିବାରଠାରୁ, ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଯାଉଛନ୍ତି !

କେବଳ କାମ ଆଉ କାମ । ତାଙ୍କ ପାଇଁ କାମ ଛଡ଼ା ଆଉ ଯେମିତି କିଛି ନାହିଁ । ଘଣାରେ ଲାଗିଥିବା ବଳଦ ପରି ।

ଗୋଟାଏ ଦୀର୍ଘଶ୍ୱାସ ସୁମନ୍ତଙ୍କ ଗ୍ଭତି ଅତରେଇ ବାହାରି ଆସିଲା ।

ନିଜ ଭିତରର ଖେଳକଲା ଭାବକୁ ସେ ତଡ଼ି ଦେବାକୁ ଚେଷ୍ଟା କଲେ ଓ ମନେ ମନେ କହିଲେ, ନାଁ ! ପ୍ରାପ୍ତିଠାରୁ ସ୍ୱପ୍ନ ହିଁ ଶ୍ରେୟସ୍କର ।

ବର୍ତ୍ତମାନଟା ତ ଅବାଧ ମନେ ହେଉଛି । ଭବିଷ୍ୟତ ଲାଗୁଛି କେମିତି ଭୟଙ୍କର ।

ସମସ୍ତ ଆତ୍ମ ସମୀକ୍ଷା, ସବୁ ବିବେଚନା ସତ୍ତ୍ୱେ କେତେ ଅସହାୟ ସତରେ ସେ ! ବିସର୍ଜନର ପ୍ରତୀକ୍ଷାରେ ଥିବା ଚେସ୍ ଖେଳର ବୋଡ଼ିଆ ପରି ।

## (୮)

ଷ୍ଟେରିଓର ସାଉଣ୍ଡ୍ ବକ୍ସରୁ ଆସୁଥିଲା ସେଇ ସଙ୍ଗୀତଟା ।

''...ଦ ଇଅର୍ସ୍ କିପ୍ ସ୍ଲୋଲ୍ ବାଇ

ଦ ସ୍ନୋ ଇଜ୍ ଅନ୍ ଦ ଗ୍ରାସ୍ ଏଗେନ୍...”

ଧୀରେ...ଅତି ଧୀରେ...ଗୀତଟା ତା'ର ନିଜସ୍ୱ ତାଳ ଲୟ ସହିତ ଭେଦ ଯାଉଥିଲା ରେଖାର ମନ ଭିତରେ । ଆଖି ବୁଜି ହୋଇ ଯାଇଥିଲା । ପ୍ରସାରିତ ହାତ ଦି'ଟା ଆଶ୍ରୟ ନେଇଥିଲା ସୋଫାର ବାହାରେ ।

ସେ ଯେମିତି ମନେ ମନେ ନାଚୁଥିଲା...

ଓ୍ୱାନ୍ ଟୁ ଥ୍ରୀ

ଓ୍ୱାନ୍ ଟୁ ଥ୍ରୀ

ଡ଼ିପ୍, ସ୍ୱେ—ଥ୍ରୀ

ଟର୍ନ ଟୁ ଥ୍ରୀ...

ଗ୍ରୁଇ ଗ୍ରୁଇଆ ଜହ୍ନ ଆଲୁଅ ପରି ଖସୁଥିଲା ସେ ଝରଣା ସଙ୍ଗୀତ ।

ସାରା ଘରଟା ଥିଲା ଶୂନ୍‌ଶାନ୍ ।

ଭୂତକୋଠି ପରି ଘର । ଆକାଶରୁ ଝୁଲିଲା ପରି ଛାତ । ଆଗପଟେ ଫୁଲ ବଗିଚା । ତାକୁ ଲାଗି ନଈ ।

ଫୁଲ ବଗିଚା ଉପରେ, ନଈ ଉପରେ...ଅଶଲସ୍ଲ ଜ୍ୟୋତ୍ସ୍ନାର ପ୍ରଲେପ ।

ସମ୍ବଲପୁରକୁ ଆସିବା ଦିନଠୁ ଜୟନ୍ତଙ୍କ ସ୍ୱାସ୍ଥ୍ୟ ଫୁରୁସତ୍ ମିଳେ ନାହିଁ । ଡେରି ରାତିରେ ଫେରିଲା ବେଳକୁ ମୁହଁଟା ତାଙ୍କର ବିଶେଷ ଗୋଟାଏ ରେଖାଙ୍କିତ ଛବି ପରି । ପ୍ରଚଣ୍ଡ ପୌରୁଷ ସହିତ ଯେମିତି ସେଥିରେ ଫେଣ୍ଟି ହୋଇ ଯାଇଥାଏ କିଛିଟା ନିଷ୍ଠୁରତା । ଜୋତା ଠକ୍ ଠକ୍ କରି ପଶି ଆସନ୍ତି । ଟୋପି ଓ ବାଡ଼ି ଥୋଇ ଦିଅନ୍ତି ସେଣ୍ଟ୍ରାଲ୍ ଟେବୁଲ୍ ଉପରେ । ସିଗାର୍ କେଶ୍‌ରୁ ଗୋଟାଏ ମୋଟା ସିଗାର୍ କାଢ଼ି ଆଣନ୍ତି । ସିଗାର୍ ଟାଣ୍ଡୁ ଟାଣ୍ଡୁ ଆଣ୍ଠୁ ଉପରେ ହାତ ଥୋଇ ଅର୍ଦ୍ଦଲିକୁ ଷ୍ଟ' ପାଇଁ କୁହନ୍ତି ଓ ରେଖା ଆଡ଼େ ଏକ ଅବୋଧ୍ୟ ଚାହାଣୀରେ ଚାହିଁ ରୁହନ୍ତି ।

ବେଡ୍ ରୁମ୍‌ରେ ପଶି ନ ପଶୁଣୁ ଦୁଇ ହାତରେ ତୋଳି ନିଅନ୍ତି । ଚିରନ୍ତନ କ୍ଷୁଧିତ ସ୍ନାୟୁତନ୍ତ୍ରୀମାନଙ୍କୁ ସମ୍ମୋହିତ, ପୁଲକିତ କରି ଦିଅନ୍ତି ।

ତାଙ୍କ କଣ୍ଠରୁ ବାହାରୁଥିବା ଅସ୍ପଷ୍ଟ ସଂଳାପ ବଢ଼େଇ ଦିଏ ତା' ସ୍ଥିତିର ଗତି । ବିଦ୍ୟୁତ୍ ପ୍ରବାହଟାଏ ସଞ୍ଚରି ଯାଏ ଦେହ ସାରା ।

ଡିଡଲ୍ ଓଠରୁ ମାଗ୍ନେଟିକ କିଛୁ ଗୋଟାଏ ଡେଇଁ ପଡ଼େ...ତାକୁ ରୋମାଞ୍ଚିତ, କମ୍ପିତ କରେ ।

ଅନୁଭୂତିର ଜୁଆର...

ପ୍ରବଳ ହିଂସ୍ର ଆବେଗ...

ପ୍ରତିଟି ରାତି ବିତିଯାଏ ଅପବାଦହୀନ ମଧୁରାତି ପରି ।

ସକାଳୁ ପୁଣି ପୋଷାକ ପକେଇ ଠକ୍ ଠକ୍ ବାହାରି ଯାଆନ୍ତି ଜୟନ୍ତ । ମେଳ ନାଇଟି ପିନ୍ଧି ହାତ ହଲାଏ ରେଖା । ଜିପ୍ ଗାଡ଼ି ଦୂରେଇ ଯାଏ ।

ପୁଲିସ୍ ବାଲା, ଅଧସ୍ତନମାନେ କୋଉ ଫାଙ୍କରୁ ଚାହିଁ ରୁହନ୍ତି ସେ ମ୍ଲାନାୟିତ, ଉଦ୍‌ବେଳିତ, ବିକ୍ଷୁବ୍ଧ ଶରୀର ଆଡ଼େ ।

( ...ମେମ୍‌ସାହେବ ଦେଖିଲା ପରି । )

...ଏମିତି କେତେ ରାତିରେ...ସାରା ଘରଟାରେ ଏ କିଶ୍ମୃଙ୍ଖଳ ନୀରବତା କେତେ ଗଭୀର ମନେ ହେଉଛି ?

ରେକର୍ଡ଼ଟା ବନ୍ଦ ହେଇ ସାରିଥିଲା ।

ରାତି କେତେ ହୋଇଥିଲା କେଜାଣି ! ରେଖା ତା' ଆପଣା ଚିନ୍ତା ଭିତରେ ବୁଡ଼ି ଯାଇଥିଲା ।

ବାରଣ୍ଡାରେ ଛୁଇ ପରି ବସି ରହୁଥିଲେ ସିପେଇ ଦି'ଟା । କୋଉ କାଳୁ ସେମାନେ ଏସ୍.ପି. ବଙ୍ଗଳାରେ ରାତି ଅର୍ଦ୍ଦଳୀ । ଗୋଟାକର ଅଣ୍ଡା ଆଖି, ସନ୍ନ୍ୟାସୀ ପରି ଚେହେରା । ଆରଟାର ରୋଗୀଣା ମୁହଁ, ଗାଢ଼ୁଆ ଆଖି । ଗାଡ଼ି ଶବ୍ଦ ଶୁଣିଲେ ସେମାନେ ଚଞ୍ଚଳ ହୋଇ ପଡ଼ନ୍ତି । ଧାଁ ଧପଡ଼ କରନ୍ତି । ତାଙ୍କର ଶୋଉ ଶୋଉ ପାହାନ୍ତା ହୋଇଯାଏ ।

...ରେଖା ଏପଟ ସେପଟ ବୁଲିବାକୁ ଲାଗିଲା ।

ପ୍ରତିଟି ରାତିରେ ସେ ଏମିତି ଅପେକ୍ଷା କରି ବୁଲୁଛି । ବାସ୍ । ପୁଣି ସେଇ ପୌନଃପୁନିକତା ।

କେବେ କେବେ ବି ରାତି ପାହିଯାଏ । ପଚାରିଲେ ଜୟନ୍ତ ହସି ଦିଅନ୍ତି । କୁହନ୍ତି—ପୁଲିସ୍ ଚାକିରି, ଏମିତି କରିବାକୁ ହୁଏ । ପରିଶ୍ରମ କଲୁ କ୍ଳାନ୍ତ ନ ଥାଏ ।

ଅବସାଦ ନ ଥାଏ । ସେଇମିତି ବ୍ରହ୍ମାଙ୍କ ଆସନ ଟଳେଇ ଦେବା ପରି ପାଟି ମେଲି ହସ ।

·· ରେଖା ଝରକା ଦେଇ ବାହାରକୁ ଗ୍ୱହିଁଲି । ମାରବ ଫୁଲ ବଗିଚ୍ଛ··· ସବୁଜ, ବଜନ । ନଷ୍ଟଲର ସୌନ୍ଦର୍ଯ୍ୟ । ଖଣ୍ଡିତ, ପ୍ରତ୍ୟୟଯୁକ୍ତ, ଦୃଢ ।

ବଗିଚ୍ଛଟା ଯେମିତି ଶୋଇ ପଡ଼ିଛି···ଶୋଇ ପଡ଼ିଛି ଶତାବ୍ଦୀ ଶତାବ୍ଦୀର ଶାନ୍ତି ନେଇ···ଗହ୍ୱନ କନ୍ଦରେ ।

କି ପ୍ରକାରର ଭ୍ରମ ସେ ? କି ପ୍ରକାରର ମାୟା ? କି ପ୍ରକାରର ଭ୍ରାନ୍ତି ?

ସେ' କ'ଣ···ଅସହ୍ୟ ଅବରୋଧ··· ? ଏକ ପ୍ରକାର କାରାବାସ ?

ସେ କ'ଣ ସତରେ ଖଣ୍ଡିତ, ବିଭକ୍ତ ହୋଇ ଯାଇଛି ?

ଗୋଟାଏ ଅଂଶ ତା'ର ଏଇମିତି ନଟୋଳା ବିଶୁଦ୍ଧ ରାତିରେ ଗ୍ୱହୁଁଛି ଶେଷ ରାତିର ମୂହୂର୍ତ୍ତିମାନଙ୍କୁ ତଣ୍ଟି ପାଖରୁ ଜାବୁଡ଼ି ଧରିବାକୁ···ଆଉ ସେମାନଙ୍କଠାରୁ ବଳତ୍କାରରେ, ଜୁଲମ୍ କରି ହାସଲ୍ କରି ନେବା ପାଇଁ ତା'ର ପ୍ରାପ୍ୟ ?

···ତରଳି ଯିବା ପାଇଁ···କୋଉ ଛଟକରେ ନିଜକୁ ସିକ୍ତ କରି ଚୁମ୍ବକୀୟ ଅନ୍ଧାରୁଆ ହାଡ଼ମାଂସ ଭିତରେ···ଶିରା ପ୍ରଶିରାରେ···ଶକ୍ତ ମେରୁଦଣ୍ଡରେ···ପ୍ରବେଶ କରିଯିବା ପାଇଁ ?

···ବନ୍ଧନୀ ଭିତରେ ବାନ୍ଧିବା ପାଇଁ ଓ ବାନ୍ଧି ହୋଇଯିବା ପାଇଁ ?

···ସ୍ନାୟୁର ନିଆଁ, ବିପୁଳ ପୌରୁଷର ଅହଙ୍କାର ପାଇଁ ?

ଆଉ ଆର ଅଂଶଟା ?

ରେଖା ଗୋଟାଏ ଅର୍ଦ୍ଧସମ୍ମୋହନ ଅବସ୍ଥାକୁ ଗ୍ୱଲି ଯାଇଥିଲି ।

ଦୂରରୁ ଶୁଭିଲା ଗାଡ଼ିର ଶବ୍ଦ । ସେ ନିଜକୁ ଗୋଟେଇ ନେଲା ।

କୋଠାର ଠକ୍ ଠକ୍ ଶବ୍ଦ । ସେ ବୁଲିପଡ଼ି ଗ୍ୱହିଁଲା ।

"ଆଜି ତମ ସୁମନ୍ତ ଭାଇଙ୍କ ଅବସ୍ଥା କ'ଣ ହୋଇଥା'ନ୍ତା ଜାଣିଛ ?" ଟୋପି ଓ ବାଡ଼ି ପେଣ୍ଡ୍ରାଲ୍ ଟେବୁଲ୍ ଉପରେ ରଖୁ ରଖୁ ସେ କହିଲେ—

ଗୋଟାଏ ଅଧୀର ଭୟ ସଞ୍ଚରି ଗଲା ରେଖାର ମନ ଭିତରେ ।

"କ'ଣ ?"

"ନିର୍ଜନ ରେଙ୍ଗାଲି ବଙ୍ଗଳାରେ ତାଙ୍କୁ ଘେରାଉ କରି ରଖିଥିଲେ କେତେଟା ଲଫଙ୍ଗା ଟୋକା । ସେମାନଙ୍କ ଭିତରେ ଗୋଟାଏ ଖୁନୀ ବି ଥିଲା ।"

"କାହିଁକି ?"

"ଫଲ୍ସ୍ ବଲ୍ ! ଟଙ୍କା ହଉ । ଅଲ୍‌ବତ୍ ହବ । ନ ହେଲେ ଫଳାଫଳ ପାଇଁ ଆମେ ଦାୟୀ ନୁହେଁ ।"

"ସେମାନଙ୍କୁ ଆରେଷ୍ଟ କରଛ ?"

"ଖାଲି ଆରେଷ୍ଟ ନୁହେଁ, ଭଲ ରକମ ମରାମତିର ବନ୍ଦୋବସ୍ତ ବି କରିଛୁ । ଅବଶ୍ୟ ସମସ୍ତେ ରୁଲିଂ ପାର୍ଟିର । ମୁଁ କାହାକୁ ଛାଡ଼ିବି ନାହିଁ ।

ଆଜି ପ୍ରଥମ କରି ଦେଖିଲି ଡମ ସ୍ୱାମୀଙ୍କ ଶାନ୍ତ, ଧୀର ଆଖିରେ ଗୋଟାଏ ପ୍ରଶଂସାସ୍ତ ଦୃଢ଼ତା । ମତେ କହିଲେ—"ଜୟନ୍ତ ବାବୁ ! ମୁଁ ଚାହେଁ ଦୋଷୀମାନେ ଯେମିତି ଉପଯୁକ୍ତ ଦଣ୍ଡ ପାଆନ୍ତୁ ।"

ଡ୍ରାଇନିଂ ଟେବୁଲ୍ ଉପରେ ଖାଉ ଖାଉ ଜୟନ୍ତ ହସିଲେ, "ଆଇଡ଼ିଆଲିସ୍ ଆର୍ ଲାଇକ୍ ଷ୍ଟାର୍ସ୍ ।

ଡମ ସୁମନ୍ତ ଭାଇଙ୍କ ବିଷୟରେ ମୋ'ର ମନେହୁଏ, ତାଙ୍କର ଗୋଟାଏ ଶହୀଦ୍ କମ୍ପ୍ଲେକ୍ସ୍ ଅଛି । ସେ ଯେମିତି ଭୁଲି ଯାଇଛନ୍ତି ତାଙ୍କ ନିଜର ପ୍ରୟୋଜନ । ଦେଖିବ, ଦିନେ ସାଇକୋ ସୋମାଟିକ୍ ବ୍ୟାଧି କିଛି ବାହାରି ପଡ଼ିବ ତାଙ୍କଠାରେ ।

"...ପରିହାସ କରୁଛ ?"

"ପରିହାସ ନୁହେଁ, ସତ କହୁଛି । ଯିଏ ନିଜକୁ ପୂର୍ଣ୍ଣିମା ରାତିରେ ନିଜ ଭିତରେ ଗୁପି ଦିଏ, ତା'ର ଅନ୍ତଗତି ନାହିଁ । ନାଁ ନିଜପାଇଁ, ନାଁ ଅନ୍ୟମାନଙ୍କ ପାଇଁ । ସେ କେବଳ ନିଜର ଅନିଷ୍ଟ କରି ଚାଲେ ।

ସୁମନ୍ତ ଭାଇଙ୍କ ପରି ମଣିଷମାନେ ସାରା ଜୀବନ କେବଳ ଠକି ହେବେ ।"

"ତମେ ବୁଝି ପାରିବ ନାହିଁ ତାଙ୍କର ସ୍ୱାଭିମାନ କେତେ ବେଶି, ତାଙ୍କ ସାଧୁତା କୋଉ ସ୍ତରର ?"

ଜୟନ୍ତ ହଠାତ୍ ହସି ଉଠିଲେ, ଅଳ୍ପ, ନରମ ହସ ।

"ମୁଁ ତ ବୁଝି ନାହିଁ । ଛାଡ଼ ।

ତମ କଥା କହିଲ ? ତମ ପାଖରେ ଯଦି ଥୁଆ ହୁଏ ଗୋଟାଏ ପଟେ ସବୁ ସୁଖ ସ୍ୱଚ୍ଛନ୍ଦ୍ୟ, ଟଙ୍କା ପଇସା ଇତ୍ୟାଦି ପ୍ରାକ୍‌ଟିକାଲ ଭୌତିକ ପଦାର୍ଥ ଓ ଅନ୍ୟ ପଟେ ନୀତି, ନିୟମ ଆଦି ଅନ୍ୟ ସବୁ, ତମେ କ'ଣ ବାସ୍ତବତାକୁ ହିଁ ଆବୋରି ନେବ ନାହିଁ ? ନୀତି ପ୍ରତି ତମର ସାମାନ୍ୟତମ ଆକର୍ଷଣ ଅଛି ? ତମ ଭିତରର ଉନ୍ନତ

ପ୍ରବୃତ୍ତି ଯୌବନ ଜାଗ୍ରତ ହେବ, ସେଇ ମୂହୂର୍ତ୍ତରେ ବୋଧହୁଏ ତମେ ମତେ ଉତ୍କର୍ଷ କର ଗ୍ରହଣ କରିସିବ ପ୍ରଥମେ !'' ସେ ଏଥର ବେଶ୍ ଜୋର୍‌ରେ ହସିଲେ, ''ମୋ' ଛଡ଼ା ବୋଧହୁଏ ଆଉ କେହି ବୁଝି ପାରିବେନି ତମର ଏ କାନ୍ଦିଲେ ମୁକ୍ତା ଝରୁଥିବା ଓ ହସିଲେ ମାଣିକ ଝରୁଥିବା ମୂର୍ତ୍ତିର ସେପଟେ କି ପ୍ରକାରର ଚକ୍ରା ସବୁ ଲୁଚି ରହିଛି ।

ଭାବ ଦେଖ !

ଆମେ ସବୁବେଳେ ଆମ ଚକ୍ରାଧାରର ବୈଧତା ସମ୍ପର୍କରେ ଅସ୍ୱୀକାର କରୁ । ଆମ ଦୁର୍ବଳତାକୁ ମାନି ନେବାକୁ ଆମେ ମୋଟେ ପ୍ରସ୍ତୁତ ନୁହେଁ ।

କିନ୍ତୁ କୁହ ତ । କେହି କ'ଣ ହୃଦୟମାନ୍ ନିଜସ୍ୱର ଉର୍ଦ୍ଧ୍ୱରେ ?

ଆଦର୍ଶବାଦୀମାନେ ଜୀବନର ଅପୂର୍ଣ୍ଣତା, ଅସମତା ବିଷୟରେ କ୍ଷୋଭ ପ୍ରକାଶ କରନ୍ତି । କିନ୍ତୁ କ'ଣ ମାନେ ହୁଏ ସେଥିରେ ? ବାସ୍ତବତାକୁ ଗ୍ରହଣ କରିନେବା କ'ଣ ବିଜ୍ଞତାର କାର୍ଯ୍ୟ ନୁହେଁ ?''

ଜୟନ୍ତ ଘର ପୋଷାକରେ ବି ଦିଶୁଥିଲେ ଅତି ଉଜ୍ଜ୍ୱଳ, ଦୀପ୍ତିମାନ୍ । କେବଳ ସାମାନ୍ୟ ବେଖାପ୍ । ତାଙ୍କର ବିମୀତ ଦୃଷ୍ଟି ରେଖା ଭିତରୁ ଯେମିତି କିଛି ଖୋଲି ତାଡ଼ି ବାହାର କରିବାକୁ ଚାହୁଁଥିଲା । କଳା ମୁହଁରେ, ହସିଲିଆ କାଳ ତଳେ ତାଙ୍କ ଧଳା ଦାନ୍ତ ସବୁ ଚକ୍ ଚକ୍ କରୁଥିଲା ।

ସେ ଗୃହାଣୀରେ ରେଖାର ମେରୁଦଣ୍ଡ ଟାଣ ହୋଇଗଲା ।

''ଜାଣେ ! ତମର ଅନେକ ଦରଦ ସୁମନ୍ତ ଭାଇଙ୍କ ପାଇଁ ! ନାଁ ?''

ଲାଜରେ ତା' ମୁହଁ ଲାଲ୍ ପଡ଼ିଗଲା ।

''ସେ ମୋ'ର ଭଉଣୀ ।''

ଜୟନ୍ତ ହାତ ଧୋଇ ସାରି, ତୁଳପଞ୍ଜି, ହଠାତ୍ ହସିଲେ । ଏକ ପ୍ରଶସ୍ତ ମୃଦୁହାସ୍ୟ । ସେଥିରେ ଥିଲା ବେପରୁଆ ଭାବ ।

''ତେବେ କଥା କ'ଣ କି ? ମୁଁ ଏ ଯାଏ ବୁଝି ପାରିନି କେମିତି ତମ ଭିତରେ ଓ ତମ ସୁମନ୍ତ ଭାଇଙ୍କ ଭିତରେ ଏମିତି ବୁଝାମଣା ରହି ପାରିଲା ?

ପିଲାଦିନୁ ଜାଣିଥିଲି ନାରୀମାନେ ଅବଳା, ଦୁର୍ବଳା, ଲାଜକୁଳୀ ଲତା ପରି ସେନ୍‌ସିଟିଭ୍ । ତମକୁ ଦେଖିଲା ପରେ ମୋ'ର ସେ ଧାରଣା ବଦଳି ଗଲା । ଅନ୍ତତଃ ବିଶ୍ୱାସ କରି ପାରିଲି, ସେମାନେ ଖୁବ୍ ଶକ୍ତ ମଧ୍ୟ ହୋଇ ପାରନ୍ତି ।

କିନ୍ତୁ ସୁମନ୍ତ ଭାଇ !

ସତରେ ! କେତେ ଉନ୍ନତ ! କେତେ ମହାନ୍ ! କେତେ ଉପରର ମଣିଷ ସେ ! ରକ୍ତମାଂସର ମଣିଷମାନଙ୍କ ଭିତରେ ତ ତାଙ୍କୁ ଗଣତି କରାଯାଇ ପାରେ ନାଁ !

ହେଲେ ରେଖା ! ଜଣେ ଯାଣକର୍ତ୍ତା ବିନା ଭୂଇଁରେ ପଡ଼ି ରହିଥିବା ପରାଜିତ ମଣିଷ ତମ ସୁମନ୍ତ ଭାଇ । ଯେତେ ଦିନ ବଞ୍ଚି ରହିଥିବେ, କାହା ଉପରେ ଭରା ଦବାକୁ ପଡ଼ିବ ।

ଏ ଓଲଟ ଦୁନିଆଁରେ ତାଙ୍କ ନୈତିକତାର କୌଣସି ସ୍ଥାନ ନାହିଁ । ଯୁଦ୍ଧ କରିବାର ସାମର୍ଥ୍ୟ ତ ନାହିଁ । ବରଂ···ଜାଣନ୍ତି ନାହିଁ କେମିତି ଯୁଦ୍ଧ କରିବାକୁ ହୁଏ ! ଆଜି ପରି ଅବସ୍ଥା ତାଙ୍କର ଅନେକ ଥର ଆସିବ ।

ଶଠତା ନାହିଁ । ଶକ୍ତି ବି ନାହିଁ । କ'ଣ ସେ କରି ପାରିବେ ?

ନ୍ୟାଚୂରାଲ୍ ଲ' ଅନୁସାରେ ସେମାନେ ତଳେଇ ଯିବା ପାଇଁ ଉଦ୍ଦିଷ୍ଟ ।"

ସିଗାର୍‌ରେ ନିଆଁ ଲଗେଇ ସାରି ଓ ଅନେକ ଗୁଡ଼ାଏ ଧୂଆଁ ଏକାଠି ଶୋଷି ନେଇ ଜୟନ୍ତ କହିଲେ—

"ସୁମନ୍ତ ଭାଇଙ୍କ ପାଇଁ ଆଉ ଗୋଟାଏ ଦୁଃଖ କ'ଣ ଜାଣ ? ନିଜର ଅପାରଗତା ବିଷୟରେ ସେ ସଚେତନ । କୁଣ୍ଠିତ । ଅସହାୟ କ୍ରୋଧରେ ସନ୍ତୁଳି ହୁଅନ୍ତି ।"

ରେଖା ହଠାତ୍ ଉଠି ବେଡ୍‌ରୁମ ଆଡ଼କୁ ଚାଲି ଯାଉଥିଲା । ଜୟନ୍ତଙ୍କ ହସ ତାକୁ ଅଧା ବାଟରେ ଅଟକେଇ ଦେଲା । ଚୂଲି ପରି ବନ୍ଧିଗଲା ।

ଆଃ ! କି ବିଭତ୍ସ ତାଙ୍କ ହସ ! ଦୟା କରି ବନ୍ଦ କରନ୍ତେ କି ! କ'ଣ ଅଛି ଏମିତି ତୁଚ୍ଛା କଥାରେ ତୁହାକୁ ତୁହା ହୋ' ହୋ' ହେଇ ହସିବାରେ ? ଯେମିତି ସୁମନ୍ତଙ୍କୁ ଉଦ୍ଧାର କରି ଖୁବ୍ ଗୋଟାଏ ବଡ଼ କାମ କରି ପକେଇଛନ୍ତି !

ଜୟନ୍ତଙ୍କର ଏଇ ପ୍ରକାରର ହସ ସବୁବେଳେ ରେଖାର ରକ୍ତକୁ ଶୀତଳ କରିଦିଏ ।

ଶକ୍ତ ହାତରେ ଧରି ନେଇ ବେଡ୍‌ରୁମ୍ ପାଖ ଚଉକିରେ ସେ ବସେଇ ଦେଲେ ରେଖାକୁ ।

"ମୁଁ ଜାଣେ । ତମର ତାଙ୍କ ପ୍ରତି ଦୁର୍ବଳତା ଅଛି ।

ତମେ ମୋ' ପ୍ରତି ବା ସେ ଗାସ୍ତୁଲୀ ଭାଉଜଙ୍କ ପ୍ରତି ଶତକଡ଼ା ଶହେ ବିଶ୍ୱସ୍ତ ନୁହଁନ୍ତି ।

ଆହୁରି ମଧ୍ୟ ଜାଣେ । ତାଙ୍କୁ ମୁଁ ତମ ଭିତରୁ ଉଠେଇ ନେଇ ପାରିବି ନାହିଁ ।"

ଜୟନ୍ତଙ୍କର ଶକ୍ତ ହାତ ରେଖାର ମୁଣ୍ଡ ଉପରୁ ଚାପ ଦେଇ ମୁହଁଟାକୁ ଟେକି ଧରିଥିଲା ।

"କ'ଣ ଠିକ୍ କହୁଛି...ନାଁ ?"

ରେଖା ଯେମିତି ଚାହିଁଥିଲା ଗୋଟାଏ ଅପରିଚିତ ମଣିଷର ମୁହଁକୁ । ସେ ମୁହଁରୁ ହୁଇସ୍କି ଓ ସିଗାରର ଫେଣ୍ଟା ଫେଣ୍ଟି ଗନ୍ଧ ବାହାରୁଥିଲା । ଘୋଷାରି ହେଲା ପରି ଗୋଟାଏ ପରେ ଗୋଟାଏ ଶବ୍ଦ ଆସୁଥିଲା । କଣ୍ଠ ସ୍ୱର ବି ଯେମିତି ତା' ପାଇଁ ଅଜଣା ଥିଲା ।

ରେଖା ପାଖରେ ଜାନ୍ତବ ସାହସର ଅଭାବ ନ ଥିଲା । କୌଣସି ବିପଦର ସମ୍ମୁଖୀନ ହେଲାବେଳେ ତା' ପ୍ରଣିଧି ଶିରା ଏବଂ ମେରୁ ହାଡ଼ରେ ସଞ୍ଚରି ଯାଉଥିଲା ସେ ଶକ୍ତି । ଆଖି ଦୁ'ଟା ସଙ୍କୁଚିତ ହୋଇ ଯାଉଥିଲା ।

ସେ ବି ଟକ୍କର ଦେବା ପାଇଁ ପ୍ରସ୍ତୁତ ହେଇଗଲା ।

"ଆଜି ଟିକିଏ ବେଶି ପିଇ ଦେଇଛ ବୋଧହୁଏ ? ହାତ କାଢ଼ ମୋ' ମୁଣ୍ଡ ଉପରୁ !"

ଜୟନ୍ତଙ୍କ ହାତଟା ଧୀରେ ଖସି ଆସିଲା ।

ରେଖା ଠିଆ ହେଇ ପଡ଼ିଲା ।

"ଦେଖ ! ଏମିତି ମନ୍ତବ୍ୟ କରିବ ନାହିଁ । ମତେ ତମେ କଣ୍ଟ୍ରୋଲ୍ କରି ପାରିବ ନାହିଁ । ସବୁ ଦିନେ ମଦ ପିଉଥିବା ଏବଂ ଅନେକ ଶସ୍ତା ନାରୀଙ୍କ ସହିତ ସମ୍ପର୍କ ରଖିଥିବା...ତମେ କ ନୀତିବାକ୍ୟ ଶୁଣଉଛ ? ଏଇ କେତେ ଦିନ ତଳେ ତମେ ସାରା ରାତି କଟେଇ ନ ଥିଲ ଝାରସୁଗୁଡ଼ାର ସେ ସବିତା ପାଣ୍ଡେ ପାଖରେ ? କେବଳ ଖରାପ ଛଡ଼ା ତମ ମନ ଭିତରେ ଆଉ କିଛି ପଶି ପାରିବ ନାହିଁ । ତମେ ବୁଝି ପାରିବ ନାହିଁ ସୁମନ୍ତ ଭାଇ ଓ ମୋ' ଭିତରର ସମ୍ପର୍କ ।

ଏମିତି ପଙ୍କ ଭିତରେ ତମେ ରହି ଆସିଛ ଯେ...ଆଉ କିଛି ତମକୁ ଜଣା ନାହିଁ ।

ଯାହା ତମେ ବୁଝି ପାରିବ ନ ସେଥିପାଇଁ ତମର ଅନେକ ହିଂସା ।"

ଓଜନିଆ ପାଦ ପକେଇ ଓ ସେଇ ବନ୍ଦୁ ପରି ହସ ହସି ଜୟନ୍ତ ଆହୁରି ପାଖେଇ ଆସିଲେ ।

"ଆଃ ! ଦୟା କରି ବନ୍ଦ କର ତମର ସେ ନାଲ୍ସ'ଳ ହସ ।" ରେଖା ହାତଯୋଡ଼ରେ କାନ ବନ୍ଦ କରି ଦେଲା ।

"ମୁଁ ହସୁଛୁ, କାରଣ ତମ ପ୍ରତି ସତରେ ମୋର ଦୟା ହୁଏ ।"

"ଆପଣଙ୍କୁ ଦୟା କରୁ । ମତେ କାହିଁକି ?"

"ମୁଁ ହିଂସା କରୁଛୁ...ନାଁ ?" ସିଧା ଆଖିରୁ ଚାହିଁ ଜୟନ୍ତ କହିଲେ, ମୁଁ ଜାଣେ । ତମ ଶରୀର ଏବେ ବି ଗୋଟା ସୁଦ୍ଧା ମୋ'ର । କେବଳ ମୋ'ର । ସେ ଶରୀର ଅନାବୃତ୍ତ ହୋଇଗଲେ, ଦି ଡେଷ୍ଟ୍ରକ୍ଟିଭ୍ ଫାୟାର୍ ଇଜ୍ କଣ୍ଟ୍ରୋଲ୍ଡ୍ ଇନ୍ ମି । ଆଇ ଆମ୍ କ୍ଲଭ୍ଡ୍ ବାଇ ୟୁ ।

ସେ ଶରୀରକୁ ସବୁବେଳେ ମୁଁ ପ୍ରଶଂସା ହିଁ କରୁଥିବି ।

କିନ୍ତୁ ପଗୃଶିବି ଗୋଟାଏ କଥା ?" ଆଖି ତାଙ୍କର ସଙ୍କୁଚିତ ହୋଇଗଲା । "ଦେହଦାନର 'ପ୍ରତିଟି ମୁହୂର୍ତ୍ତରେ...ତମ ମନରେ ସୁମନ୍ତ ଭାଇ ଆଆନ୍ତି କି ?"

ରେଖାର ଗ୍ରୀବା ଭିତରଟା ଦବି ଗଲା କୋଉ ଅତଳାନ୍ତ ଗହ୍ୱରକୁ । ମୁହଁଟା ଦିଶିଲା ବ୍ୟାକୁଳ, ବିବର୍ଣ୍ଣ ।

"ତମେ ଯାହା କହିଲ, ଅବଶ୍ୟ ସତ କଥା ! ନାରୀର ଦେହଟା ସବୁବେଳେ ମୋ' ପାଇଁ ସୁବିଧାରେ ମିଳି ଯାଇଛୁ । ସେ ସବିତା ପାଣି ହେଉ, ନଳିନୀ ଦାଶ ହେଉ, ଅଥବା ହେଉ କୋଉ ଅଜଣା ପି.ଜ. ଛାତ୍ରୀ !

କିନ୍ତୁ ରେଖା ! ମୁଁ ଖୋଜୁଛୁ ମନ, ଖୋଜୁଛୁ ହୃଦୟ ।

ତମ ପାଇଁ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଖଞ୍ଜି ଦେଲା ପରେ ବି...ତମର ସମସ୍ତ ଔଚିତ୍ୟକୁ ଉତ୍ସାହିତ କଲା ପରେ ମଧ୍ୟ...ତମେ ଏମିତି କିଛି ଚାହୁଁଛ...ଯୋଉଥିରେ ତମର ବାସ୍ତବ ଆନନ୍ଦ ନାହିଁ ।

ମୁଁ ଜାଣେ । କିଛି ମତେ ଅଗୋଚର ନାହିଁ ।

କିନ୍ତୁ କାହିଁକି ?

ବୁଝିଛି ତମ ସୁମନ୍ତ ଭାଇଙ୍କୁ ଠିକ୍ ଭାବେ ?" ଏଥର ସେ ହସିଲେ ହୁଗୁଳା ହସ ।

"ସେଇଥିପାଇଁ ମୋ'ର ଦୟା ହୁଏ ତମ ପ୍ରତି ।

ଓ.କେ. ! ...ଠିକ୍ ଅଛି । କିନ୍ତୁ ..ସବୁ ସତ୍ତ୍ୱେ ..ଆଇ ଲଭ୍ ୟୁ ।"

ସିଟି ମାରି ମାରି ଜୟନ୍ତ ହାଲୁକା ଭାବେ ଖଟ ଉପରକୁ ଚାଲିଗଲେ । "କମ୍ ଅନ୍ ଡାର୍ଲିଂ ।"

ରେଖା ହାତ ବଢ଼େଇ ଆଲୁଅ ଲିଭେଇ ଦେଲା । ସେ ଯେମିତି ଗୋଟାଏ ଅଜଣା ଘରେ ଠିଆ ହେଇଛି । ତାକୁ ଘେରିଛି ମୁଖ୍ୟ ପଖ କଳା ଅନ୍ଧାର । ତା' ଛାତି ଉଠୁଥିଲା, ପଡ଼ୁଥିଲା । ସାରା ଦେହଟା ଥରୁଥିଲା ।

କି ଭୟଙ୍କର ଏ ଲୋକଟା ! ଏକୁଟିଆ । ସମସ୍ତଙ୍କଠାରୁ ପୃଥକ୍ । କିନ୍ତୁ ଅଖଣ୍ଡ···ଅବିଭକ୍ତ । ନିଜ ପାଇଁ ଖାତିର୍ ନାହିଁ । କାହା ପାଇଁ ଖ୍ୟାତିର୍ ନାହିଁ । ସରଳ ଜ୍ୟାମିତି ପରି ସେ ଯେମିତି ତା' ଜୀବନର ସବୁ ପ୍ରଶ୍ନର ସମାଧାନ ନିଜେ କରି ନେଇ ପାରିବ ।

ତା' ପ୍ରବୃତ୍ତିର ଜଟିଳତା ଓ ପ୍ରହେଳିକାକୁ ଧରି ଗୁଇଟାଏ ପରି ସେ ଚିତ୍ ହେଇ ପଡ଼ିଛି ଖଟ ଉପରେ ।

ରେଖା କେତେ ସମୟ ଧରି ଯେମିତି ଠିଆ ହୋଇଥିଲା କାହିଁକି ଆଉକି କେଜାଣି । ଫିଟି ପଡ଼ିଥିବା କଳାଘୁମର ମେଘ ପରି କେଶ ଫାଳେ ଗାଲ ଉପରେ ପଡ଼ିଥିଲା । ନିଃଶ୍ୱାସ ଯାଉଥିଲା ଆସୁଥିଲା ଜୋର୍‌ରେ ।

ଆଦି ମାନବର ହାତ ପରି ଦ'ଟା ହାତ ତାକୁ ଟେକି ନେଲେ ଅନ୍ଧାର ଭିତରେ ।

ତାକୁ ଲାଗିଲା ସେ ଯେମିତି ପିଷ୍ଟ ହୋଇ ଯିବ ଗୋଟା ସୁଦ୍ଧା । ହଜି ଯିବ ତା'ର ଅସ୍ତିତ୍ୱ ।

ଆବର୍ତ୍ତିତ ଅନ୍ଧାର ଭିତରେ · ସେ ପାଶବିକତା·· ବନ୍ୟତା ଓ ବାତୁଳତା ଭିତରେ ··ସେ ଥିବା ମହିମାନ୍ୱିତା ହୋଇ ପଡ଼ିଥିଲା ।

ସତରେ ! ସେ କେମିତି ଅସ୍ୱୀକାର କରିବ ? କେମିତି ଚିନ୍ତା କରି ପାରିବ ଯେ ଜୟନ୍ତ ତାକୁ ଭଲ ପାଆନ୍ତି ନାହିଁ ?

# (୨୦)

ଛୁଟି ଦିନ ।

ସାମନ୍ତରାୟ ସାହେବ ପ୍ରାତଃ ଭ୍ରମଣ ସାରି ହାପ୍ ପ୍ୟାଣ୍ଟ୍, ଟି-ସାର୍ଟ ଓ କେଡ୍ସ୍ ଜୋତାରେ ବଗିଚାରେ ବୁଲୁ ବୁଲୁ ସୁମନ୍ତଙ୍କୁ ମନେ ମନେ ଅପେକ୍ଷା କରୁଥିଲେ । ସକାଳୁ କିଛି ଜଗିଂ କରିବା ତାଙ୍କର ନିତି ଦିନିଆ ଅଭ୍ୟାସ । ସେଇଥିପାଇଁ ତାଙ୍କ ଦେହରେ ଅନାବଶ୍ୟକ ମାଂସ ଲାଗିନି ନାହିଁ । ବୟସକୁ ସେ ବେଶ୍ କିଛି ଦୂରେଇ ଦେଇଛନ୍ତି ।

ସୁମନ୍ତ ପଛ ନ ପଶୁଣୁ ସେ ପାଟି କରି ଉଠିଲେ, "ଆସ, ଆସ ସୁମନ୍ତ ! ତମକୁ ଅପେକ୍ଷା କରିଛି ।

ତମେ ତ ଏ ଯାଏ ମୋ' ବଗିଚା ପୂରା ଦେଖିନ ! ଆସ । ସକାଳୁ ଜଗିଂ କଲା ପରେ ଟିକେ ବଗିଚାରେ ମୋ' ଫୁଲମାନଙ୍କୁ ଦେଖିଲେ, ମତେ ଆନନ୍ଦ ଲାଗେ, ହାଲୁକା ଲାଗେ । ନେଚର୍ ମଣିଷ ପାଇଁ ଏକ ପ୍ରକାର ଟ୍ରାଙ୍କୁଇଲାଇଜର୍ । ହଁ । କ'ଣ କହୁଛ ? ଇଟ୍ସ୍ ଏ ଗ୍ରେଟ୍ ଫିଜିସିଆନ୍ ଅଲ୍‌ସୋ । ମଣିଷର ଯେତେ ଅସୁସ୍ଥତା, ସେ ସବୁ ତ ଦେହରେ ନ ଥାଏ ! ଥାଏ ଚେତନାରେ ।

ଏଇଠି ଯେତେବେଳେ କିଛି ସମୟ ପାଇଁ ମୁଁ ବସିଯାଏ, କିଏ ଯେମିତି ଫେରେଇ ଦିଏ ମୋ'ର ବାକ୍‌ଶକ୍ତି ।

···ଦେଖ ! ଏ କଦମ୍ବ ଗଛଟା କିଏ ଲଗେଇ ଥିଲା କେଜାଣି, ଏ ଘରର ସବୁଠାରୁ ମୂଲ୍ୟବାନ ସମ୍ପତ୍ତି ପରି ମତେ ଲାଗେ ।

ଦେଖିଥିଲ ଆଗରୁ କଦମ୍ବ ଗଛ ?"

"ନାଁ ସାର୍ !"

"ଦେଖି ନ ଥିଲ ?" ଆମୋଦରେ ହସିଲେ ସାମନ୍ତରାୟ ସାହେବ ।

"ଯମୁନା କୂଳେ···କଦମ୍ବ ମୂଳେ···? ହଇଓ ! ଏଇ ଗଛ ତଳେ ପରା କୃଷ୍ଣ ବଂଶୀ ଫୁଙ୍କୁଥିଲେ !"

( ସତରେ ! କଦମ୍ବ ଗଛ ସାମନ୍ତରାୟ ସାହେବଙ୍କ ପରି ମଣିଷଙ୍କ ବଙ୍ଗଳାରେ ଶୋଭା ପାଇବ )

"ଚମ୍ପା ଫୁଲଠାରୁ ଆହୁରି ମ୍ୟାଜେଷ୍ଟିକ୍ ! ହୁଏତ···ଦଶ ବର୍ଷର ଗଛ ହେବ । କେତେ ଉଚ୍ଚା ହେଇଛି ଦେଖୁଚ ?

ହଜାସିଲା କାଠି ପରି ଉଆଁସ ହୁଏ ଏଇଥିକୁ !

ଅଣ୍ଟାରେ ହାତ ଦେଇ ସେ ମୁହୂର୍ତ୍ତେ ଗୁହିଁଲେ ଗଛଟାକୁ । ତା'ପରେ ଏକ ଦାର୍ଶନିକ ପରି କହିଲେ, "କଦମ୍ବ ଗଛର ଅଧ୍ୟାତ୍ମିକ ମୂଲ୍ୟ କେବଳ ଅନୁଭବ ହିଁ ଜାଣେ ।

ଆସ ! ମୋ' ଷ୍ଟଡ଼ିରେ ବସିବା । ତମୁକୁ ବିରକ୍ତ କରୁଛୁ ବୋଧହୁଏ ?

"ନାଇଁ ସାର୍ !"

"ହଁ ତ ! ନାଇଁ କ'ଣ ?"

ଷ୍ଟଡ଼ିର ସାଇଁଲ କବାଟ ଫାଙ୍କରେ ବେଡ଼୍‌ରୁମ୍ ଦିଶୁଥିଲା । ଡ୍ରାଇଙ୍ଗ୍ ମଧ୍ୟ । ସବୁଠି ଉନ୍ନତ ରୁଚି ଏବଂ ପ୍ରାଚୁର୍ଯ୍ୟର ଅତ୍ୟଧିକତା ବାରି ହୋଇ ପଡ଼ୁଥିଲା । ସୁମନ୍ତ ବାହାର ବୈଠକଖାନା ଟପି ଏ ପଟକୁ କେବେ ଆସି ନ ଥିଲେ । କେବଳ ବନ୍ଧୁପାକ୍ଷ-ବାବୁଙ୍କଠୁ ଶୁଣିଥିଲେ । ଶୁଣିଥିଲେ···ସବୁ କିଛି ଦେଖିଲା ପରି ।

ତଳେ ଘାସ ରଙ୍ଗର କାର୍ପେଟ୍ । ଯେମିତି ସବୁଜ ଘାସର ଗାଲିଚା । ଆର୍ଟିଫିସିଆଲ୍ ସିଲ୍‌କ୍‌ରୁ ଝୁଲୁଛି ସ୍ୟାଣ୍ଡେଲିଅର୍ । ପ୍ରତ୍ୟେକ ଶଯ୍ୟା ଧାରରେ ଚମତ୍କାର ବେଡ୍ ସାଇଡ୍ ଲ୍ୟାମ୍ପ । ଫୁଲ ଦାନୀରେ ସଜାକୁ ଥୁଆ ହୋଇ ସାରଲଣି ରଜନୀ ଗନ୍ଧାର ସ୍ତବକ ।

ଧଳା ବଲ୍‌ବ ଲଗା ଉନଟିକିଆ ଠିଆ ଦର୍ପଣର ଲାବଣ୍ୟମୟୀ ଡ୍ରେସିଂ ଟେବୁଲ୍ । ପରଦା ଫାଙ୍କରେ ଦିଶୁଛି ଖୋଲା ନକ୍ସତ ଟଏଲେଟ୍‌ର ବାଥ୍ ଟବ୍ ଓ ଦୁଧ ରଙ୍ଗର ସେରାମିକ୍ ଟାଇଲ୍‌ସ୍ ।

ପ୍ରାଚୁର୍ଯ୍ୟ ଯୋଉଠି ଥାଏ, ସେଠି ଏମିତି ଉଚ୍ଛୁଳ ପଡ଼ୁଥାଏ ।

ପୂର୍ଣ୍ଣିମୀ ରାତିରେ ସନ୍ଧ୍ୟାଧାରର ଆଲୁଅ ଜଳିଲା ପରି ।

ସୂର୍ଯ୍ୟୋଦୟ ହେଲା ପରେ ବି ଆକାଶରେ ଜହ୍ନ ଥିଲା ପରି ।

ସମୁଦ୍ର ଉପରେ ବର୍ଷା ପିଟିଲା ପରି ।

"ବ୍ସ ନଅ ସୁମନ୍ତ ।"

ସୁମନ୍ତଙ୍କ ଦୃଷ୍ଟି ଫେରି ଆସିଲା । ସେ ସଚେତନ ହୋଇ ପଡ଼ିଲେ ।

"କାଲି ଫେରିଲି ସନ୍ଧ୍ୟାରେ ।

ସତରେ ! ବର୍ଷରେ ଥରେ ପଣ୍ଡିଚେରୀ ନ ଗଲେ ମତେ ଅସ୍ଥିର ଲାଗେ । ଗୋଟାଏ କେମିତି ବ୍ୟାକୁଳତା ଗ୍ରାସ କରେ । ତମେ କେବେ ଯାଇଚ ପଣ୍ଡିଚେରୀ ?

"ହଁ ସାର୍ !"

"ଅରେ ଯାଅ । ଫେର ଆସି କହିବ । ଶ୍ରୀମାଙ୍କ ସମାଧି ପାଖରେ ସନ୍ଧ୍ୟାରେ ଟିକେ ବସି ପଡ଼ିଲେ ଆଉ ସେ ଯାଗା ଛାଡ଼ି ଆସିବାକୁ ଜମାର ଇଚ୍ଛା ହୁଏନା । ଅରୋଭିଲ୍ ଢ଼ଆର ଘୂରିଲିଣି । ଦେଖିଲି ପର ଯାଗାଟାଏ ।

ତା'ଛଡ଼ା ଟୁରିଷ୍ଟ୍‌ମାନଙ୍କ ପାଇଁ ପଣ୍ଡିଚେରୀ ଗୋଟାଏ ପାରାଡ଼ାଇଜ୍ ।"

"ସାର୍ ।"

ସୁମନ୍ତ୍ର ଅନୁଭବ କରି ପାରୁଥିଲେ··· ଅନ୍ଦର ମହଲରେ ଆଣି ବସେଇବା, ଏତେ କଥା ଗପିବା ପଛରେ ଆଉ କିଛି ଲୁଚି ରହିଛି ।

ସାମନ୍ତରାୟ ସାହେବ କେବେ ବି କୌଣସି କଥା ଉପରକୁ ସିଧା ସଳଖ ତୀର ପରି ଓହ୍ଲେଇ ଆସନ୍ତି ନାହିଁ ।

କିନ୍ତୁ କ'ଣ ହେଇପାରେ···ସେ କଥା ? ଯୋଉଥିପାଇଁ ଏତେ ଭୂମିକା ଏତେ ମୁଖବନ୍ଧ, ଗୌର ଚନ୍ଦ୍ରିକା ?

ସାମନ୍ତରାୟ ସାହେବଙ୍କର ସବୁବେଳେ ଉପର ଏକ ବଡ଼ କୋମଳତା । ଅଳ୍ପ କଥା କହୁଥିବା ଏବଂ ଇଙ୍ଗିତରେ ବୁଝାଉଥିବା ଚତୁରୀ ନାଗର କଥା ପରି ।

ସୁମନ୍ତ୍ରଙ୍କ ପରି ଭାବ ପ୍ରବଣ ମଣିଷକୁ ସେ ହଠାତ୍ କିଛି କହି ଦେବାକୁ ଚାହାଁନ୍ତି ନାହିଁ, ଯୋଉଥିରେ ତାଙ୍କ ସମ୍ମାନ ବା ଗାରିମାରେ ଆଞ୍ଚ ଆସିବ ।

ସାମନ୍ତରାୟ ସାହେବ କିଛି ସମୟ ଚୁପ୍ ରହିଲେ ନୀରବରେ । ତାଙ୍କ ଆଖି କ'ଣ ଯେମିତି ଖୋଜୁଥିଲା ସୁମନ୍ତ୍ରଙ୍କ ଆଖିରେ ।

"ସୁମନ୍ତ୍ର ! କାଲି ରାତିରେ ମୋ' ପାଖକୁ ଏମ୍. ଏଲ୍. ଏ. ଗୋବର୍ଦ୍ଧନବାବୁ ଆସିଥିଲେ ।"

( ଓ ! କଥାଟା ତା' ହେଲେ ଏଇଠି । ସୁମନ୍ତ୍ରଙ୍କର ରକ୍ତ ଚାପ ହଠାତ୍ ବଢ଼ିଗଲା ବୋଧହୁଏ । )

"ମୁଁ କ'ଣ ବୁଝି ନାହିଁ ? ଏମାନେ ପାଦଚଲା ରାସ୍ତା ପରି, ବେଶ୍ୟା ପରି । ସମସ୍ତଙ୍କର ! ପୁଣି କାହାର ନୁହନ୍ତି । ହେଲେ କ'ଣ କରିବା ? ଜନତାର ପ୍ରତିନିଧି । ଆଦର୍ଶ ନ ଥାଉ ! ନ ଥାଉ ତ୍ୟାଗ ! ତଥାପି ସମ୍ମାନ ଦେବାକୁ ପଡ଼ିବ । ମନ ଭିତରେ ଯାହା ଥିଲେ ବି ନମ୍ର ହେବାକୁ ପଡ଼ିବ ।"

"ମୁଁ ତ ଅସମ୍ମାନ କରି ନାହିଁ ?"

"ଆରେ…ନାଁ ନାଁ ! ତା' କ'ଣ ମୁଁ ଜାଣେ ନାଁ ?

ତମ ପରି ମଣିଷ କାହାକୁ କେବେ ବି ଅସମ୍ମାନ କରି ନ ପାରେ । ଆଉ ନୈଁ !

ଇଞ୍ଜିନିୟରିଂ ଡିପାର୍ଟମେଣ୍ଟକୁ ସେମାନେ କାମଧେନୁ ବୋଲି ଭାବି ଆସିଛନ୍ତି କୋଉ କାଳରୁ । ଆମେଇ ସେମାନଙ୍କୁ ସେମିତି କରିଛୁ । ଆମ ପୂର୍ବ ପୁରୁଷମାନେ ଶଗଡ଼ଗୁଳା ପକେଇଛନ୍ତି । ବିଲେଇକୁ ହାତ କାମୁଡ଼ା ଶିଖେଇଛେ ଆମେ ।

ଏମାନେ ଯାହା ଇନ୍‌ଭେଷ୍ଟ କରି ଆଆନ୍ତି ଇଲେକ୍‌ସନ୍‌ରେ ସେଇଟା ସେମାନଙ୍କ ମୂଳଧନ । ସେମାନେ ଏମିତି ସୁଧ ହାସଲ୍ କରି ଚାଲିଆ'ନ୍ତି । ସୁଧଟା ମୂଳଠାରୁ ଅଧିକ ପ୍ରିୟ କି ନାଁ !

ଯୋଉଦିନ ସୁମନ୍ତ ଟେଲିଫୋନ୍‌ରେ ସେ ଲୋକଟାର କଥା ଶୁଣିଥିଲେ, ତାଙ୍କ ରକ୍ତରେ ନିଆଁ ଲାଗି ଯାଇଥିଲା । କି ଶାଣିତ ସେ ବ୍ୟଙ୍ଗ !

ଅଥଚ, ଯେତେବେଳେ ସେ ରଙ୍ଗମଞ୍ଚ ଉପରେ ସାମ୍ବର୍ଦ୍ଧନା ଉତ୍ସବରେ ବକ୍ତୃତା ଦେଉଥିଲା…ତା'ର ମୁରୁକି ହସା, ବିନମ୍ର, ତଲ୍ଲୀନ ଭାବ ତାକୁ ଗୋଟାଏ ନିସ୍ୱାର୍ଥପର ନେତା କରି ଥୋଇଥିଲା, ସେ ଯେମିତି ଜନତାର ସଚ୍ଚା ସେବକଟିଏ । ଆଖିରେ ସେଇ ଭାବ । ଆପଣମାନେ ମତେ ଭୋଟ ଦେଇଛନ୍ତି, ସେବା କରିବାକୁ ସୁଯୋଗ ଦେଇଛନ୍ତି । ମୁଁ କୃତଜ୍ଞ ।

ବିଜାତ ଗୃହିଣୀ ।

"ପରିମଳ, ମାର୍କଣ୍ଡ, ସତ୍ୟନାରାୟଣ ଯୋଉମାନଙ୍କୁ ଏସ୍. ପି. ଆରେଷ୍ଟ କଲେ ସେମାନେ ଗୋବର୍ଦ୍ଧନ ବାବୁଙ୍କର ଖାସ୍ ସେବକ ।

ମୁଁ ଭାବୁଛି…ଗୋଟାଏ ବୁଝାମଣା କରିନେବା ବୁଦ୍ଧିମାନ କାର୍ଯ୍ୟ ହେବ ।

"ମାନେ ?"

"ଦେଖ ସୁମନ୍ତ ! ମୁଁ ବୁଝିଛି । ବୁଝିଛି ତମେ କେତେ ଦୂର ଅପମାନିତ ହୋଇଛ ! କାଲି ଏମ୍.ଏଲ୍.ଏ.ଙ୍କୁ ବି ହେଇକଥା କହିଛି । ସେ ଜବାବ ଦେଇଛନ୍ତି, ଭବିଷ୍ୟତରେ ତମ ଇଜ୍ଜତ ଉପରେ ଆଦୌ ଆଞ୍ଚ ଆସିବ ନାହିଁ । ଏହାର ପୁନରାବୃତ୍ତି କେବେ ବି ହେବ ନାହିଁ ।

କ’ଣ ଆଉ କରିବା ? ସେ୍ୱ ଗ୍ରନ୍ଥାଗାରରେ ସତରେ କ’ଣ କିଛି ଉନ୍ନତି ଅଛି ? ବାହାରକୁ ଏତେ ଥାଟ୍ ବାଟ୍, କିନ୍ତୁ ଆମେ ଜାଣୁ ପ୍ରକୃତରେ ଆମର ସ୍ଥିତି କୋଉଠି ।

ଯାହା ବି ମାନସିକ ଯନ୍ତ୍ରଣା ହେଉ ନାଁ କାହିଁକି, ଆମକୁ ପରିସ୍ଥିତି ସହିତ ଖାପ୍ ଖୁଆଇ ଚାଲିବାକୁ ପଡ଼ିବ ।

ତମେ ତ ଥିଲ ! ସେ ଦିନ ଦେଖିଲ ଗୋଟାଏ ସରପଞ୍ଚ କେମିତି ମତେ ଯାହା ମନେ ତାହା କହି ଦେଇ ଗଲା ! ଉପରକୁ ସିନା ହସୁଥିଲି ! କିନ୍ତୁ ମୁଁ କ’ଣ ଆଘାତ ପାଇ ନ ଥିଲି ମନ ଭିତରେ ?

ଏ ଡ଼ିପାର୍ଟମେଣ୍ଟରେ ଏତେ ବର୍ଷ ଚାକିରି କରି ତମକୁ କହୁଛି ସୁମନ୍…ମୁଁ ଧରି ନେଇଛି, ଯେହେତୁ ସମ୍ମାନ ନାହିଁ, ତେଣୁ ଅପମାନ ବି ନାହିଁ । ହଜମ୍ କରି ନେବା ହିଁ ଏକ ଉଚିତ୍ ପନ୍ଥା ।

ପଲିଟିକାଲ୍ ଲୋକଙ୍କୁ କେମିତି ଜାଣି ହେବ ଜାଣିଛ ? ସିଧା ସଳଖ ଟକ୍କର ଦେଇ ନୁହେଁ । ସେମାନେ ଗୋଖର ସାପ ହେଲେ, ତମକୁ କେଳା ହେବାକୁ ପଡ଼ିବ ।

ତା’ଛଡ଼ା କୁକୁର ତମକୁ କାମୁଡ଼ିଲେ, ତମେ କ’ଣ ତାକୁ କାମୁଡ଼ିବ ? କୋଉ କାଲିବର୍‌ର ଲୋକ ଏମାନେ ? ତମେ ଜାଣ । ଅଲ୍ ଥାର୍ଡ଼ ଗ୍ରେଡ଼୍ ପିପଲ୍ ରନ୍ ଟୁ ପଲିଟିକସ୍ । କିଏ ରାଜନୀତି କରେ ? ଯାହା ଦ୍ୱାରା ପାଠ ଶାଠ ହୁଏ ନାହିଁ । ଟାଉଟର ଛଡ଼ା ଯାହାକୁ ଆଉ କିଛି ଜଣା ନାହିଁ ।

ମୋ’ କଥା ମାନ ।

କମ୍ ଟୁ ଟର୍ମସ୍ ।”

“ଆପଣ କ’ଣ କହୁଛନ୍ତି ସାର୍ ?”

“ଗୋଟାଏ ବୃହ୍ମାମଣା । କମ୍ପ୍ରୋମାଇଜ୍ । କିଛି ପଇସା ସେମାନଙ୍କୁ ଦେଇଦିଅ । ନଟ୍ ହ୍ୱାଟ ଦେ ଡ଼ିମାଣ୍ଡ୍ । କିଛି ଗୋଟାଏ…ଛୁଞ୍ଚା ରୁଟି ଖଣ୍ଡେ ପରି ।

ସେ୍ୱ ଏମ୍. ଏଲ୍. ଏ. ମାନେ ଗୋଟାଏ ଗୋଟାଏ ଇଂଲିଶ୍ ଚ୍ୟାନେଲ୍ । ମନ୍ତ୍ରୀଙ୍କ ପାଖରେ ପହଞ୍ଚିବାକୁ ହେଲେ ଏଇ ଚ୍ୟାନେଲ୍ ପହଁରିବାକୁ ପଡ଼େ ।

ବାଇବ୍‌ଲ୍ ସିନା କୁହେ, ସ୍ୱର୍ଗକୁ ଦ୍ୱାର ଟା ସିଧା ! କିନ୍ତୁ ଏମ୍. ଏଲ୍. ଏ.ଙ୍କ ବିନା ମନ୍ତ୍ରୀଙ୍କ ଦୁଆର ସବୁବେଳେ ବନ୍ଦ ।

କ'ଣ କରିବା କୁହ ?

ମୁଁ ବି ବଡ଼ ଅସୁବିଧାରେ ପଡ଼ି ଯାଇଛି ।"

"ମୁଁ କିନ୍ତୁ ସାର୍...ସାଲିସ୍ କରିବାକୁ ପ୍ରସ୍ତୁତ ନୁହେଁ । ଗୋଟାଏ ପଇସା ମୁଁ ଅଧିକା ଦେଇ ପାରିବି ନାହିଁ । ଆପଣଙ୍କଠୁ କ୍ଷମା ଚାହୁଁଛି ସାର୍ ! ମତେ ଭୁଲ୍ ବୁଝିବେ ନାହିଁ । ଏଇଟା ମୋ'ର ନୀତି, ମୋ'ର ଆଦର୍ଶ ।"

ଇଲେକ୍ଟ୍ରୋନିକ୍ ବଜାର ପରି ସାମନ୍ତରାୟ ସାହେବଙ୍କ ଆଖିରେ ସୁମନ୍ତଙ୍କ ମନୋଭାବ ପରିଷ୍କାର ଧରା ପଡ଼ିଗଲା । ତାଙ୍କର ସାରା ଦେହ ମୁହୂର୍ତ୍ତକ ପାଇଁ କଠିନ ହୋଇଗଲା । କିଛି ସମୟ ପାଇଁ ସେ ନୀରବ ରହିଲେ ।

"ହଉ ! ତମେ ଯାଅ । ଆଉ ଥରେ ଚିନ୍ତା କରିବ । ମତେ କାଲି କହିବ ।" ସେ ନିରୁଦ୍ଵିଗ୍ନ, ଧୀର ଏବଂ ଶାନ୍ତ କଣ୍ଠରେ କହିଲେ ।

ସୁମନ୍ତ ଘରକୁ ଫେରିଲେ ।

ଗାୟତ୍ରୀ ତିନି ଦିନ ହେଲା ଯାଇଛି ଢେଙ୍କାନାଳ । ପ୍ରଥମ ସନ୍ତାନ ପ୍ରସବର ଦାୟିତ୍ୱ ନେଇଛନ୍ତି ଅନୁପମ ଭାଇ ଓ ରୁନୁ ଭାଉଜ । ତା'ପରେ କେତେ ଦିନ ଗାଁରେ ବାପାଙ୍କ ପାଖରେ ବିତେଇବାର ଯୋଜନା ଅଛି ।

ଗାୟତ୍ରୀ ବିହୁନେ ସାରା ଘରଟା ଲାଗୁଛି ଖାଁ ଖାଁ । ଜଳଶୂନ୍ୟ ପାତ୍ର ପରି ଖାଲି ଖାଲି ।

ତା'ର ଇଚ୍ଛା ନ ଥିଲା । ଯିବା ପୂର୍ବରୁ କେମିତି ଗୋଟାଏ କରୁଣ ଚାହାଣୀରେ ସୁମନ୍ତଙ୍କୁ ଚାହିଁ ସେ ଗାଡ଼ିରେ ବସିଥିଲା । ମୋଡ଼ ବୁଲିଲା ପର୍ଯ୍ୟନ୍ତ ପଛକୁ ବୁଲି ବୁଲି ଚାହୁଁ ଥିଲା । ସେ ଜାଣିଥିଲା, ସ୍ତ୍ରୀ ବିନା କେଡ଼େ ଅସହାୟ ହୋଇ ପଡ଼ିବେ ସୁମନ୍ତ । କିନ୍ତୁ ସୁମନ୍ତ ହିଁ ଜିଦ୍ କରିଥିଲେ ।

ପୂର୍ବ ଏସ୍.ଡି.ଓ.ଙ୍କ ଅମଳରୁ ଥିବା ଅଧ ଡଜନେ ଖଲାସିଙ୍କୁ ତ ଗାୟତ୍ରୀ ମୁକ୍ତ କରି ଦେଇଥିଲା । ଯୋଉ ଗୋଟିଏ ରହିଥିଲା, ତାକୁ ବି ସେ ଘରେ ପଶିବାକୁ ଦେଉ ନ ଥିଲା । ସବୁବେଳେ ତା'ର ଝୁଙ୍କ୍ କଳେ ଗନ୍ଧ ଘୁଆଇବ । ଦୁ'ଜଣ ମଣିଷରେ କ'ଣ ବା କାମ ଯେ ! ତା'ଛଡ଼ା ଏଇ ବସ୍ତୁସବୁ ଏତେ ଅସୁସରେ ରହିଲେ ମଣିଷ ଅକାମୀ ହୋଇଯିବ । ସେ ପରା ସୁମନ୍ତଙ୍କ ସହିତ ପାଦ ମିଳେଇ ଚାଲିବ ?

ସୁମନ୍ତ ତ କୁହନ୍ତି, ଚରିତ୍ରର ଯେ କୌଣସି ଗୁଣ ଗଛରୁ ଖସି ପଡ଼େ ନାହିଁ । ସେଥିପାଇଁ ନିୟମିତ ଭାବେ ଅଭ୍ୟାସ କରିବାକୁ ପଡ଼େ । ଗାୟତ୍ରୀ ସେଇ ଅଭ୍ୟାସ କରି ଚାଲିଥିଲା ।

ସୁମନ୍ତଙ୍କୁ ଛାଡ଼ିଗଲା ଦିନ ତା' ଆଖି ଦିଟା ସଜଳ ହୋଇ ଯାଇଥିଲା । ତା' ଜୀବନର ସବୁଠାରୁ ବଡ଼ ଗୌରବ ଥିଲା···ସେ ସୁମନ୍ତଙ୍କୁ ବାହା ହୋଇଛୁ ।

ସୁମନ୍ତ ସିନା ସବୁବେଳେ ଆତ୍ମ ବିସର୍ଜନ କରିବା ପାଇଁ ପ୍ରସ୍ତୁତ । ହେଲେ ତା' ହୃଦୟଟା ତ ବନ୍ଧା ହୋଇଛୁ ମାୟାରେ ! ଖୁଣ୍ଟିରେ ବନ୍ଧା ଯାଇଥିବା ଗୁଣ୍ଡିଏ ପଶୁ ! ସେଥିରୁ ତା'ର ମୁକ୍ତି କାହିଁ ?

ଯିବା ପୂର୍ବ ଦିନ ରାତିରେ ସେ ଏତେ କାନ୍ଦିଥିଲା ଯେ···ତା' ଲୁହରେ ମହାନଦୀରେ ବନ୍ୟା ଆସି ଯାଇଥା'ନ୍ତା ।

ନୀରବତାରେ ବୁଢ଼ି ରହି ଅନେକ ସମୟ ଧରି ଠିଆ ହୋଇଥିଲେ ସୁମନ୍ତ ସେଇ ଦାଣ୍ଡ ଘରର ମଝିଟାରେ ।

ଏତିକି ବେଳକୁ ଦାରିଦ୍ର୍ୟର ଧକ୍କା ଲାଗିଲାଣି । ଦୁ' ପ୍ରାଣୀର ସଂସାର ଅବଶ୍ୟ ଚାଲି ଯାଉଛି । କିନ୍ତୁ କଷ୍ଟେ ମଷ୍ଟେ । ସଞ୍ଚୟ ତ ଆଦୌ ନାହିଁ । ସ୍କୁଟର୍ ଖଣ୍ଡେ କିଣିବେ ବୋଲି ଚିନ୍ତା କରିଥିଲେ । ଲୋନ୍ କୌଣସି ମତେ ମିଳିଗଲା । ଦାମ୍ ତିନି ହଜାର ଚାରିଶହ ଟଙ୍କା । କିନ୍ତୁ ସେତିକି ବେଳକୁ ଆରମ୍ଭ ହେଲା ଡାକ୍ତରି ଖର୍ଚ୍ଚ । ମର୍ଣ୍ଣିଂ ସିକ୍‌ନେସ୍, ପିଲା ବାନ୍ତି ପରେ ପରେ ପେଟର ଗୋଳମାଳ, ଏସିଡ଼ିଟି ପ୍ରଭୃତି ।

ଗାୟତ୍ରୀଙ୍କୁ ଏମିତି ଅରୁଚି ଲାଗିଲା ଯେ, ରାତିସାରା ଶୋଇ ପାରିଲା ନାହିଁ । ତା'ପରେ ଅଣ୍ଟାଧରା, କାଲ୍‌ସିଅମ୍ ଅଭାବ, ପାଇଲାଇଟିସ୍ । ପୁଣି ଭେରିକୋସ୍ ଭେନ୍‌ସ୍, ଗୋଡ଼ ଫୁଲା, ରକ୍ତ ହୀନତା, ଟକ୍‌ସିମିଆ ।

ବାରମ୍ବାର ଡ଼ାକ୍ତରଙ୍କ ଭିଜିଟ୍ ଓ ଔଷଧ ଖର୍ଚ୍ଚ । ଲୋନ୍‌ଟଙ୍କା ଖସି ଖସି ଆସିଲା । ସ୍କୁଟର୍ କିଣିବା ଯୋଜନା ଆପେ ଆପେ ବାତିଲ୍ ହୋଇଗଲା ।

ଗାୟତ୍ରୀ ରାତିସାରା ବିଛଣା ଉପରେ ସେମିତି ପଡ଼ି ରହୁଥିଲା । ତାକୁ ନିଦ ଆସୁ ନ ଥିଲା, ସେଥିରେ ସେ ଘୂରି ଘୂରି ଘରର କାମ୍ ସବୁ କରୁଥିଲା । ସୁମନ୍ତଙ୍କ ପାଖରେ ହସୁଥିଲା ଯେମିତି ତା'ର କିଛି ହୋଇ ନାହିଁ ।

ଏମିତି ଅବସ୍ଥାରେ ବି ତାକୁ ଏକୁଟିଆ ଛାଡ଼ି ଦେଇ ସୁମନ୍ତ ଟୁର୍‌ରେ ଯାଉଥିଲେ, ରାତିରେ କାମ ପାଖରେ ରହୁଥିଲେ ।

ସତରେ ! ବେଶ୍ କିଛି ଅତ୍ୟାଚାର ହୋଇଗଲା ଗାୟତ୍ରୀ ଉପରେ !

ତେଣୁ ଯେତେବେଳେ ଅନୁପମ ଭାଇ ପ୍ରସ୍ତାବଟା ଦେଲେ, ସୁମନ୍ତ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ଗାୟତ୍ରୀ କହୁଥିଲା, ସେ କେମିତି ଚଳିବେ ? ମୁଁ ଚାଲି

ଗଲେ ସେ ତ ଦଣ୍ଡେ ବି ଚାଲି ପାରିବେ ନାହିଁ ! ରୁନୁ ଖାଉଜି କହିଲେ, ଆହା ! ତମେ ଆସିବା ଆଗରୁ ସତରେ ସେ ଅଚଳ ଥିଲେ ! ମରଣ ହେଉ ନାହିଁ ଯାହା ତମକୁ ?

ସୁମନ୍ତଙ୍କର ହୃଦ୍‌ବୋଧ ହୋଇଥିଲା, ସେ ସତରେ ଅପରାଧ କରିଛନ୍ତି । ଯଥେଷ୍ଟ ଅତ୍ୟାଚାର କରିଛନ୍ତି । ଆଉ ନୁହେଁ । ଏତେ କମ୍ୟୁନିକେସନ୍ ଭିତରେ ଠିକ୍ ଖବରେ ଯେ ଗାୟତ୍ରୀଙ୍କର ତେଲଭରି କରେଇବା ସାମର୍ଥ୍ୟ ତାଙ୍କର ନାହିଁ, ସେ ବିଷୟରେ ସେ କୁଏତ ସଚେତନ ହୋଇଥିଲେ ।

ଚେଷ୍ଟା ଜିଦ୍ କରି ସେ ହିଁ ପଠେଇ ଦେଇ ଥିଲେ ଗାୟତ୍ରୀଙ୍କୁ ।

ରୁନୁ ଖାଉଜି କହିଥିଲେ, ସୁମନ୍ତଙ୍କ ଖାଇବା···ବ୍ରେକ୍‌ଫାଷ୍ଟଠାରୁ ଆରମ୍ଭ କରି ଡିନର୍ ପର୍ଯ୍ୟନ୍ତ ରେଖା ପଠାଇବ । ତା'ର ତ କିଛି ଅସୁବିଧା ନାହିଁ । ଗୁଡ଼ାଏ ଅର୍ଦ୍ଧଳି ଖାଲି ଏପଟ ସେପଟ ହେଉଛନ୍ତି । ଗାୟତ୍ରୀ କହିଲେ, ରେଖା ଯଦି ଦାୟିତ୍ୱ ନେଇ ଯାଆନ୍ତା ସେ ନିଶ୍ଚିନ୍ତରେ ଓ ଆନନ୍ଦ ମନରେ ସୁମନ୍ତଙ୍କୁ ତା' ଜିମା ଛାଡ଼ି ଦେଇ ଯାଇ ପାରନ୍ତେ ।

ସୁମନ୍ତଙ୍କର କିନ୍ତୁ ଏକା ଜିଦ୍···ନାଁ !

ମିସେସ୍ ବେଦୀ ଦାସ୍ ପଶି ଆସିଲେ ତାଙ୍କର ନୂଆ ପ୍ଲାଷ୍ଟିକ ଜୁଆର ନେଇ··· ସାରା ଘରଟାକୁ ଭସେଇ ଦେବାର ମୁଦ୍ରାରେ । ଟଣା ଟଣା ଆଖିରେ କଟାକ୍ଷ ହାଣି କହିଥିଲେ, ମଲ ଯାଃ ! ହଇଓ ଦେବର୍‌ଜୀ ! ସେପଟରେ ପରା ମୁଁ ଅଛୁ ! ଖାଲି ଗୋଟାଏ କଥାକୁ ଛାଡ଼ି ଦେଲେ ଆଉ କୋଉଥିରେ ଅସୁବିଧା ହବ ନାହିଁ ମଁ !

ତା' ପରେ ସେଇ ଲହରିଆ ହସ ।

ଗାୟତ୍ରୀ ! ତମେ ମତେ କହିଦେବ ତ କେତେବେଳେ କ'ଣ । ସେ' କେତେବେଳେ, କଲଖିଆରେ କ'ଣ ? ଭଅର ଆମର କ'ଣ ଭଲ ପାଆନ୍ତି ? ଦେଖିବ ! ତମକୁ ଯଦି ସେ ଭୁଲି ନ ଯିବେ, ମତେ କହିବ !

ସୁମନ୍ତ କିନ୍ତୁ ହସି ହସି କୌଶଳରେ ସମସ୍ତଙ୍କୁ ଏଡ଼େଇ ଯାଇଥିଲେ । ସକାଳୁ ଇଚ୍ଛା ଆସିଯାଏ । ଖରାବେଳେ ସାଉଥ୍ ଇଣ୍ଡିଆନ୍‌ର ଖାଦ୍ୟ । କେତେବେଳେ କୋଉଠି ଖାଇ ନଅନ୍ତି ତା'ର ଠିକଣା ନ ଥାଏ ।

ଗାୟତ୍ରୀ ଯିବାର ପନ୍ଦର ଦିନ ହେଇ ଗଲାଣି । ସେଇ ଦିନଠୁ ସୁମନ୍ତ ତାଙ୍କର ସମସ୍ତ ମାନସିକ ଆବେଗକୁ ନିଜ ଭିତରେ ଚାପି ରଖିଛନ୍ତି । ଖରା ନେବାର ମଣିଷ ତ ପାଖରେ ନାହିଁ ।

ମନେ ପଡ଼ୁଛୁ ତା' ମୁହଁଟା ଯୋଉ ମୁହଁ ଦେଇ ସିଧା ସଳଖ ତା' ଆତ୍ମା ପାଖରେ ପହଞ୍ଚି ଯାଇ ହୁଏ । ଯେଉ ପବନ ନଷ୍ପାପ ମୁହଁ । ତା' ସୌନ୍ଦର୍ଯ୍ୟରେ, ତା' ସୁରଭିରେ ସାରା ଘରଟା ଅବା ଉଛୁଳି ପଡ଼ୁଥିଲ । ସେ ଯେମିତ ଥିଲ ସୁମନ୍ତଙ୍କ ପାଇଁ ସ୍ୱର୍ଗ । ସାରା ବ୍ରହ୍ମାଣ୍ଡଠାରୁ ଊର୍ଦ୍ଧ୍ୱରେ ଆଉ କଛୁ ।

ତା' ବନା ସୁମନ୍ତ ପାଲଟି ଯାଇଛନ୍ତି ଚଟାଣ ପର ଜଡ଼, ନଷ୍ପ୍ରାଣ ।

ବାହାରୁ ଶୁଭିଲ, "ଏସ୍.ଡ଼ି.ଓ. ସାହେବ ଘରେ ଅଛ ? ଭାଇ ! ମୋ' ସାନ ଭାଇ ହୋ !"

ବରୂପାକ୍ଷ ବାବୁ ଏମିତ ମଝିରେ ମଝିରେ ହଲ୍ଲା କରନ୍ତି । ସାରା କଲୋନି କମ୍ପାନ୍ତି । ପଡ଼ୋଶୀମାନେ ଝରକା ଦେଇ ଆମୋଦରେ ଚାହିଁ ରୁହନ୍ତି ।

ଖୋଲ ଦେହ । ବେକରେ ସୁନା ଚେନ୍ ଝୁଲୁଛୁ । ପାଟିରେ ଷ୍ଟେଟ୍ ଏକ୍ସ୍‌ପ୍ରେସ୍ । ସେ ପଶି ଆସିଲେ ବୈଠକଖାନା ଭିତରକୁ ।

"କ୍ୟା ବାତ୍ ହୈ ଭାଇ ? ସାମନ୍ତରାସ୍ତ କ'ଣ କଛୁ ଡୋଜ୍ ଦେଇ ଦେଲ କ ? ସକାଳୁ ସକାଳୁ ତକରା ଦେଖି ମୁଁ ଭାବଲ ମୁଡ଼୍ ନଷ୍ଟହୁ ଖରାପ ଥିବ ।

ଆଉ ଦେଖୁଛୁ, ସତସତକା ଖରାପ ହୋଇ ଯାଇଛୁ ।

କଥା କ'ଣ ?"

ସୁମନ୍ତ କହଲେ ସବୁ କଥା ।

"ଶଳା ହାରାମୀ ସେ ଗୋବର୍ଦ୍ଧନ ବୁଝିଲେ ? ମୁଁ ତ ଯେତେବେଳେ ଦାଦା ଟୋକାମାନଙ୍କର ଆରେଷ୍ଟ କଥା ଶୁଣିଲ, ମତେ ଲଗିଲ ଏତେ ଦନକେ ଏସ୍.ପି. ସାହେବ କଛୁ ଗୋଟାଏ କରାମତ ଦେଖେଇଲେ । ଆମେ ତ ଜାଣୁ ପୋଲସ୍ ଫୋଲଶ୍ । କନ୍ତୁ ଆପଣଙ୍କ ରିଲେସନ୍ ବୋଲ ଜାଣୁ ନାହିଁ । ଜସ୍ତଂତ ମହାପାତ୍ର ପୋଲସ୍ ରୁକଷା ପାଇଁ ସବୁଠୁ ଫିଟିଂ ଅଫିସର୍ ! ତାଙ୍କୁ ଦେଖିଲେ ଏଇନେ ପ୍ରମାଦ ଗଣିଲେଣି ଛେଡ଼୍ ମାରୁଥିବା ଟୋକାମାନେ ।

ହେଲେ ···ଭାଇ !

ଆମେ ବା କ ଯୁଦ୍ଧ କରି ପାରବା ? ଆମ ରୁକଷାରେ ତ କଛୁ ଅସୁବଧା ହେଲେ···ଯଃ ପଳାୟତ ସଃ ଜୀବତ !

ଉପରବାଲ ସାହେବ ଗୋଷ୍ଠୀରେ ଗଲେ । ତଳବାଲ ଭାଇ ଭାଇ । ଆମେ ଯୋଉ ସକ୍ ଆବ୍‌ଜର୍‌ବର୍ ଗୋଷ୍ଠୀ, କୋଉ କାମର ଆମେ ? ନାଁ ଏପଟ ନାଁ ସେପଟ । ମୁଁ କହୁ ନ ଥିଲ···ସରଜ୍ କୁଲଆ ?

ଘରକୁ କୁଳଆ କ'ଣ ବୁଝିଁଛନ୍ତି କି ?"

"କ'ଣ ?"

"ଆହ୍ୱଃ···ଏ ଯାଏ ଜାଣି ନାହାନ୍ତି ନଜର ପରିଚୟ ? ଚାହିଁ ନାହାନ୍ତି କଜେ ଆପଣାକୁ ଆପେ ?

ଧେତ୍ ତେରି !

ଶୁଣନ୍ତୁ ।"

ବିରୂପାକ୍ଷ ବାବୁ ସଜାଡ଼ି ହୋଇ ବସିଲେ । ଆଉ ଗୋଟାଏ ସିଗାରେଟ୍ ଲଗେଇଲେ ।

"ରାମଚନ୍ଦ୍ର ଯେତେବେଳେ ଚଉଦ ବର୍ଷ ବନବାସ କରିବାକୁ ଗଲେ ମିସେସ୍ ସିତମ୍ବା ଦେବୀଙ୍କ ସହିତ, ତାଙ୍କ ସବ୍‌ଜେକ୍ଟମାନେ ଯାଇଥିଲେ ସି ଅଫ୍ କରିବାକୁ, ଆଖିରେ ଆଖିଏ ଆଖିଏ ଲୁହ ଧରି । ହେ ପ୍ରଭୁ, ତମେ ଆମକୁ ଅନାଥ କରି ଚାଲି ଯାଉଛ, ଆମେ ଏବେ କ'ଣ କରିବୁ ?

ରାଜା ବିନା ପ୍ରଜାଏ ଅନାଥ ନୁହନ୍ତି କି ?

ମିଷ୍ଟର ଏଣ୍ଡ ମିସେସ୍ ରାମଚନ୍ଦ୍ର ଡଙ୍ଗା ଚଢ଼ିଲେ । କହିଲେ —"ହେ ଅଯୋଧ୍ୟାର ନଗରବାସୀମାନେ ! ତମେମାନେ ଅଯୋଧ୍ୟା ଫେରିଯାଅ ।"

ଏହା ଥିଲା ରାଜାଙ୍କର ପ୍ରଜାମାନଙ୍କ ପ୍ରତି ଆଦେଶ ।

କିନ୍ତୁ ସେ ଯେତେବେଳେ ଚଉଦ ବର୍ଷ ପରେ ଫେରିଲେ, ଦେଖିଲେ ଲୋକେ ସେମିତି ଠିଆ ହୋଇଛନ୍ତି ସରଜୁ ନଦୀ ତଟରେ ।

ରାମଚନ୍ଦ୍ର ବିରକ୍ତ ହେଇଗଲେ । ଇଡ଼ିଅଟ୍‌ସ୍ ! ତମକୁ ପରା ଆଦେଶ ଦେଇଥିଲି ଅଯୋଧ୍ୟା ଫେରିଯିବା ପାଇଁ ? ତମେ ଚଉଦ ବର୍ଷ ହେଲାଣି ଏଠି ଏମିତି ଠିଆ ହୋଇ କାହିଁକି କଷ୍ଟ ପାଉଛ ?

ପ୍ରଥମେ ତ ସେମାନଙ୍କର ମୁଣ୍ଡ ନଇଁଗଲା ତଳକୁ । କିନ୍ତୁ···ସେମାନେ··· ସେମିତି···ନତମସ୍ତକ ହୋଇ ··( ମାନେ···ଆମେମାନେ ଯେମିତି କରିଥାଉ ବଡ଼ ବଡ଼ ବସ୍‌ଙ୍କ ଆଗରେ ) କହିଲେ—ପ୍ରଭୁ ! କ୍ଷମା କରନ୍ତୁ ! ଆମମାନଙ୍କ ପାଇଁ ଆପଣଙ୍କର ତ କୌଣସି ନିର୍ଦ୍ଦିଷ୍ଟ ଆଦେଶ ନ ଥିଲା ।

"ହ୍ୱାଟ୍ ?"

ଆମେ ପ୍ରଭୁ ନର ନୋହୁଁ କି ନାରୀ ନୋହୁଁ !"

ବୁଝିଲେ ! ସେଇମାନଙ୍କୁ କୁହାଯାଏ ଘରଜ କୂଳିଆ । ଆଉ, ଆମେ ସବୁ ସେଇ ଘରଜ କୂଳିଆ ।

ଆମ ଦ୍ଵାରା କି ଯୁଦ୍ଧ ହେବ ? କୋଉ ଯୁଦ୍ଧରେ ବା ଆମେ ଜିତି ପାରିବା ?

ଶୁଣନ୍ତୁ ! ଚାଲନ୍ତୁ ଆମ ଘରକୁ । ଆଜି ଆପଣଙ୍କ ଲଞ୍ଚ୍ ସେଇଠି । ଗାୟତ୍ରୀ ଦେବୀ ଯିବାର ପନ୍ଦର ଦିନ ହୋଇ ଗଲାଣି, ଅଥଚ···ଆପଣ ଆମ ଘରେ ଥରେ ବି ଲଞ୍ଚ୍ ଖାଇ ନାହାନ୍ତି ! ଆପଣଙ୍କ ଶ୍ଵଶୁର ଏଇଟାକୁ ମୋ'ର ଅପାରଗତା ବୋଲି ଧରି ନେଇଛନ୍ତି । ତାଙ୍କ ବାନ୍ଧବୀ ଆସିଲେ କି କୈଫିୟତ୍ ସେ ଦେବେ ?"

ସୁମନ୍ତ ସାମାନ୍ୟ କୁଣ୍ଠା ଓ ଲଜ୍ଜା ପ୍ରକାଶ କରଂତେ, ବିରୂପାକ୍ଷ ତାଙ୍କୁ ଜୋର୍ କରି ଉଠେଇ ଦେଲେ ।

"ଆସନ୍ତୁ, ଆସନ୍ତୁ ! ଆପଣଙ୍କ ପାଇଁ ନୁହେଁ । ଆମକୁ ପ୍ରତିବେଶୀର ଧର୍ମ ପାଳନ କରିବାକୁ ସୁଯୋଗ ଦେବା ପାଇଁ ଏବଂ ଗାୟତ୍ରୀ ଦେବୀଙ୍କ ପାଖରେ ଲଜ୍ଜିତ ନ କରେଇବା ପାଇଁ ।

## (୨୨)

ରାତିର ମୂର୍ଚ୍ଛିତ ନିଶୂତ ।

ଆକାଶରେ ଜହ୍ନଟା ଝଲ୍‌ମଲ୍ ହେଉଥିଲା ।

ସାରା ଘରଟା ଥିଲା ଶୂନ୍‌ଶାନ୍ ।

ଖାନସାମାକୁ ଛୁଟି କରି ଦେଇଥିଲେ ସୁମଂତ । ଆଜି ରାତିରେ ତା'ର କିଛି ପ୍ରୟୋଜନ ନାହିଁ । ପାଉଁରୋଟି ଅଛି, ବଟର୍ ଅଛି । ରାତିର କାମ ଚଳିଯିବ ।

ଗ୍ରେଟ ଲନ୍‌ଟି ଉପରେ ବେତ ଚେୟାର ଖଣ୍ଡେ ପକେଇ, କାକରରେ ଭିଜି ଭିଜି ସେ ବସିଥିଲେ । ମନେ ହେଉଥିଲା, ପୃଥିବୀଟା ଯେମିତି ଅନେକ ଦୂରେଇ ଯାଇଛି ।

ଗାୟତ୍ରୀ ଗଲା ପରେ ପ୍ରତିଟି ରାତି ତାଙ୍କୁ ଏମିତି ଏକୁଟିଆ ଏକୁଟିଆ ଲାଗୁଛି । ଏଇ ସମୟରେ ଅତୀତକୁ ରୋମନ୍ଥନ କରିବା ତାଙ୍କର ଅଭ୍ୟାସଗତ ହୋଇ ଗଲାଣି ।

ଆଉ ଗୋଟାଏ ସଂଘର୍ଷ ଏମ୍. ଏଲ୍. ଏ.ଙ୍କ ସହିତ । ସୁମଂତ ଜାଣିଥିଲେ ଏ ସବୁର ଫଳାଫଳ । ଶେଷରେ ଗୋଟାଏ ପରାଜୟ ତାଙ୍କୁ ପ୍ରତୀକ୍ଷା କରିଛି ଉପହାସ କରିବା ପାଇଁ ।

ଏଇମିତି ତାଙ୍କ ମୁଣ୍ଡ ବାରମ୍ବାର ପିଟି ହେଉ ଥିବ କବାଟ କାନ୍ଥ ଦେହରେ । ବନ୍ଦ ଥିବ ଗୃହ ଭିତରଟା । ତଥାପି ସେ ଖାତିର୍ କରୁ ନ ଥିବେ । ମୁକାବିଲା କରି ଚାଲିଥିବେ । ଯଦ୍ୟପି ସମସ୍ତେ କହନ୍ତି, ଏ ସବୁର କିଛି ମାନେ ହୁଏ ନାହିଁ, ଆଜିର ଟଂଚାଧାରରେ ସେ ଗୋଟାଏ ଆଉଟ୍ କାଷ୍ଟ୍ । ଛିନ୍ନମୂଳ ହୋଇ ଭାସୁଥିବା ଜୀବନ ।

···ଅଣ୍ଡା ଲାଗୁଛି ।

ଚା' କପେ ପିଇଲେ କେମିତି ହୁଅନ୍ତା ?

ଗାୟତ୍ରୀ ଆସିବା ଦିନଠାରୁ ସୁମଂତ ନିଜ ହାତରେ କପେ ଚା' କରି ପିଇ ନ ଥିଲେ କେବେ । ଚା' କ'ଣ ? ଗିଲାସେ ପାଣି ମଧ୍ୟ ଗଡ଼େଇ ନେଇ ପିଇବା ପାଇଁ ଅନୁମତି ନ ଥିଲା ସୁମଂତଙ୍କ ପାଇଁ ।

ଏବେ କିନ୍ତୁ ସେ ଗଲା ଦିନଠୁ, ମର୍ଣ୍ଣିରେ ମର୍ଣ୍ଣିରେ, ଏମିତି ନିର୍ଜନ, ପରିତ୍ୟକ୍ତ, ବିଳାପ କଲା ପରି ମୁହୂର୍ତ୍ତିମାନଙ୍କରେ, ସେ ନିଜ ହାତରେ ନିଜେ ଚା' କରି ପିଅନ୍ତି । ଧୀରେ ଧୀରେ ଅଭ୍ୟାସ ହେଲାଣି ।

ଭଲ ଲାଗୁଛି ମଧ୍ୟ ।

ସୁମନ୍ତ ଗ୍ୟାସ ଲଗେଇଲେ ।

କେତେବେଳେ କେଜାଣି, ନିଃଶବ୍ଦରେ ଗାଡ଼ିଟାଏ ଆସି ଅଟକିଲା ବାହାରେ । ରେଖା ନିଃଶବ୍ଦରେ ଓହ୍ଲେଇ ଆସିଲା । ଗଲା ସୋଷେଇ ଘର ଯାଏ ।

ଗେଞ୍ଜି ଖଣ୍ଡେ ପିନ୍ଧି ଗ୍ୟାସ ଚୁଲି ପାଖରେ ଠିଆ ହୋଇଛନ୍ତି ସୁମଂତ । ସସ୍‌ପ୍ୟାନ୍‌ଟା ବସିଛି ଚୁଲି ଉପରେ ।

ସୁମଂତ ଏକେବାର ଏକୁଟିଆ । ଖାଲିସି ନାହିଁ । କେହି ଅତିଥି ନାହାନ୍ତି ।

କାହିଁ କେତେ ଯୁଗ ହେଲା ଅବା ସେ ଚାହିଁ ବସିଥିଲା···ନିରୋଳାରେ ଦି'ପଦ କଥା ହେଇ ପାରଂତା ! ଗାୟତ୍ରୀ ଅପା ଗଲା ପରେ ବି ସବୁବେଳେ କେହି ନା କେହି ଥାଆନ୍ତି । ନ ହେଲେ ରାତି ଡେରଯାଏ ବାବୁ ଅଫିସ୍‌ରେ ଏକୁଟିଆ ବସି କ'ଣ କାମରେ ଲାଗିଥା'ନ୍ତି । ସଚ୍ଚା ସରକାରୀ କର୍ମଚାରୀ ତ !

ଆଜି ସେ କିନ୍ତୁ ସ୍ଥିର କରିଥିଲା···ଯେମିତି ହେଉ, ଏକୁଟିଆ ଗପିବ ସୁମନ୍ତଙ୍କ ସହିତ । ଅନେକ ଗପ କରିବ ।

ଜୟନ୍ତ ହାଇଦ୍ରାବାଦ ଯାଇଛନ୍ତି ଟ୍ରେନିଂରେ । ସମସ୍ତ ଭ ଖାଲିରେ ବି ବଳି ପଡ଼େ ତା' ପାଇଁ । ସେଇ ଦିନ ପରଠାରୁ ଜୟନ୍ତ ଆଉ ସୁମନ୍ତଙ୍କ

କଥା ଉଠେଇ ନାହାନ୍ତି । ଏହା ଅନ୍ୟାୟ ଆକାଂକ୍ଷା ବୋଲି କହି ଲଘୁ ବା ରୁକ୍ଷ ମନ୍ତବ୍ୟ ଦେଇ ନାହାନ୍ତି । ନ ହେଲେ ତ ସେ ଅନେକ ସମୟରେ ଅସ୍ଥିର, ଚଞ୍ଚଳ ଓ ଉଚ୍ଛୃଙ୍ଖଳ ହେଇ ପଡ଼ନ୍ତି···ଠିକ୍ ଗାତରୁ ଉଠି ଆସିଥିବା ଦାନବଟାଏ ପରି ।

କିନ୍ତୁ ନିଜର ସ୍ୱାମୀ ପ୍ରତି ରେଖାର ବେଳେ ବେଳେ ଦୟା ହୁଏ । ଏମିତି କିଛୁ ସେ ଦେଇ ପାରନ୍ତି, ଯାହା ଅନ୍ୟ କାହାର ଦେବାର ହୁଏତ ସାମର୍ଥ୍ୟ ନାହିଁ ।

ତଥାପି ··ଅଭିମାନୀ । ଗର୍ବୀ କୋଉଠିକାର !

ସୁମନ୍ତ କିନ୍ତୁ କେତେ ବିବେକୀ, ମର୍ଯ୍ୟାଦା ସମ୍ପନ୍ନ ମଣିଷ !

ଜଣେ ସବୁ ସୁଯୋଗର ଫାଇଦା ଉଠାଉଥିବା ବେଳେ, ଆଉ ଜଣେ ସେ ସବୁକୁ ଆଡ଼େଇ ଚାଲିଛନ୍ତି !

ସୁମନ୍ତଙ୍କୁ ଏମିତି ଗ୍ୟାସ୍ ଚୁଲି ପାଖରେ କଳ୍ପନା କରିହେବ ନାହିଁ । ପତଳା ଦେହଟା ଆହୁରି ପତଳା ହୋଇ ଯାଇଛି । କେମିତି କରୁଣ ଲାଗୁଛନ୍ତି ସେ । ପ୍ରଥମ ସାକ୍ଷାତରେ ସେ ତନ୍ଦ୍ରାଳୁ ଆଖି ଦୁ'ଟା ନିସ୍ତରଙ୍ଗ ହେଇ ଯାଇଛି । "ଖବର ଦେବେ । ମୁଁ ସୁମନ୍ତ ପଟ୍ଟନାୟକ ।" ସେ ପ୍ରତିଧ୍ୱନିତ ହେଲା ପରି କଣ୍ଠସ୍ୱର ବଦଳି ଯାଇଛି ।

ରେଖା ତରବରରେ ଗ୍ୟାସ୍ ଚୁଲି ପାଖକୁ ଚାଲି ଆସିଲା । "ଉଠ, ଉଠ ! ତମକୁ କିଏ କହୁଛି ଏ ସବୁ କରିବା ପାଇଁ ।"

"କାହିଁ କ'ଣ ହେଲା ? ନିଜ ଘରେ ନିଜ ପାଇଁ···"

"ଆଉ !" ସେ ଅଧିକ ପାଣି ଦେଲା । କ୍ଷୀର ମିଶେଇଲା । ଚା' ପତ୍ର ପକେଇଲା । ଲୁଗା କାନରେ ସସ୍ପ୍ୟାନ୍ ଓହ୍ଲେଇଲା । ଦୁ'ଟା କପ୍ ରେ ଚା' ଛାଣି ଛାଣି ସୁମନ୍ତଙ୍କୁ ଜଣେଇ ଚାହିଁଲା । ହସିଲା । ତା' ଗାଲ୍ ଦୁ'ଟା ଆକର୍ଷଣୀୟ ଭାବେ ଗୋଲାପି ଦିଶୁଥିଲେ ।

ତା' ହସରେ ଏମିତି ଭାବ ଥିଲା ଯେ ··ଯେମିତି ଜୀବନଟା ତା' ପାଇଁ ଚଞ୍ଚଳ ଏବଂ ଜୀବନ୍ତ । ଗୋଟାଏ ଖୋଲା କବାଟ । ଏତେ ବେପରୁଆ ଯେ ··କେବଳ ଏ ଦୁନିଆଁ ନୁହେଁ, ଅତୀତ ଓ ଭବିଷ୍ୟତର ଦୁନିଆଁଟା ବି ତା' ପାଇଁ କିଛି ନୁହେଁ । ଫୁଟ୍କରି ମାରି ସେ ସବୁ କିଛିକୁ ଉଡ଼େଇ ଦେଇ ପାରିବ ।

ଅଣ୍ଟାରେ ଲୁଗାକାନି ଖୋସି ଦେଇ, ଦୁ' ହାତରେ ଚା' କପ୍ ଧରି ସେ ଚାଲି ପଡ଼ିଲା ।

‘‘ନାଅ’’

ତା’ ମୁହଁ ଟେକ ହୋଇ ଯାଇଥିଲା । କୁହୁଡ଼ି ଧୂଆଁ ଉଜ୍ଜ୍ୱଳ, ସତେଜ ଫୁଲଟିଏ ପରି ।

‘‘ଅଣ୍ଡାରେ ବସିବାକୁ ହବ ନାହିଁ । କୌଣସି ରୁମରେ, ଯୋଉଠି ତମର ଇଚ୍ଛା । ବାବୁଙ୍କୁ ଅଣ୍ଡା ଧରଗଲେ ବୁଝିବ କଏ ?’’

‘‘ଡ୍ରଇଂ ରୁମ୍ ’’

‘‘ଜାଁ ! ବେଡ୍ ରୁମ୍ ! ମୁଁ ତମର ବାହାଣିଆ ଅତଥି ନୁହେଁ । ତମ ଶାଲୀନା ।’’

କଥା କହିଲା ବେଳେ ତା’ ମୁଣ୍ଡ ହଲୁଥିଲା । କାନର ଗୋଲ ଗୋଲ ରିଂ ଦଟା ପିଟି ହେଉଥିଲା ଗାଲ ଦେହରେ । ଖୁବ୍ ସୁନ୍ଦର ମାନୁଥିଲା ରେଖାଙ୍କୁ । ଗହଣା ନୁହେଁ, ଯେମିତ କମନୀୟତାର ଅଂଶ ବିଶେଷ ।

ଧୀରେ ସୁମନ୍ତଙ୍କ ବାହୁ ଉପରେ ହାତ ରଖି କହିଲା—‘ଗୁଲ’ ।

ବିଛଣା ଉପରେ ବସି ପଡ଼ି ରେଖା କହିଲା—‘‘ସୁମନ୍ତ ପଟ୍ଟନାୟକଙ୍କୁ ଗୁ’ କରିବା ଶୋଭା ପାଏ ନାଁ । ଶୋଭା ପାଏ ମାଟ୍ରେଲା ଷ୍ଟୁଡ଼ିରେ ବସି କବିତା ଲେଖିବା, ଭାଓଲିନ୍ ବଜେଇବା, ସାହିତ୍ୟ ସଭାରେ ସାରଗର୍ଭକ ବକ୍ତୃତା ଦେବା କିମ୍ବା ସୁକୁମାରଆ, ବୁଦ୍ଧିମାନ୍ ମଣିଷଙ୍କ ଗହଣରେ କିଛି ଆଳାପ ଆଲୋଚନା କରିବା ।

ହାତରେ ବସ୍ତ୍ର ଯାଇଥିବା ଟ୍ରାଉଜର, ହାତକଟା ଗେଞ୍ଜି ନୁହେଁ, ସିଲ୍କ ଟ୍ରାଉଜର, ସିଲ୍କ ପଞ୍ଜାବୀ ।’’

ସୁମନ୍ତ ଏଥର ବେଶ୍ ଜୋର୍‌ରେ ହସିଲେ ।

‘‘ସତେ ?

କବିତା ଲେଖିବା ବା ଭାଓଲିନ୍ ବଜେଇବାର ବଳାସ ଛାଡ଼ି ଦେଇଛୁ ।

ସିଲ୍କ ଟ୍ରାଉଜର୍ ପଞ୍ଜାବୀ ବଦଳରେ ଶୀତରୁ ପାଇଁ କମ୍ବଳର ପ୍ରୟୋଜନ ଅଧିକ ।

ଅନେକ ବଡ଼ ବଡ଼ ଲୋକ ନିଜ ହାତରେ ଗୁ’ କରି ପାରୁଥିଲେ । ସ୍ୱେଟର ମଧ୍ୟ କରି ଜାଣିଥିଲେ ।

ଗୁ’ କରିବାଟା ବଡ଼ ହେବା ପାଇଁ ସିଡ଼ିର ଗୋଟାଏ ପାହାଚ ।

ଆଉ ···ମୋ' କଥା ଶୁଣିବା ପାଇଁ କେହି ବୁଦ୍ଧିମାନ ମଣିଷ ଏବେ ଆଗ୍ରହୀ ନୁହଁନ୍ତି ।

ସେମାନେ କ'ଣ କୁହନ୍ତି ଜାଣନ୍ତି ?"

"କ'ଣ ?"

"ମାନବିକତା, ଯନ୍ତ୍ରଣା, ଆବେଗ, ଭାବ ପ୍ରବଣତା···ଏ ସବୁ ହାସ୍ୟାସ୍ପଦ । ଏଥିରେ କିଛି ଯାଏ ଆସେ ନାହିଁ । ମୁଣ୍ଡରେ ମଗଜ ଥିବା ମଣିଷମାନେ କୁହନ୍ତି— ମୂଲ୍ୟାୟନ କରିବା ପାଇଁ ଲୋକଟାର ଇନ୍‌ଷ୍ଟ୍ରୁମେଣ୍ଟାଲିଟି ବଡ଼ କଥା । ଯେମିତି ଛୁରିଟାଏ···ଭଲ କାଗଜ କାଟି ପାରୁଛି କି ନାଁ ? କୁରାଢ଼ୀଟାଏ ଠିକ୍ କାଠ ଚିରି ପାରୁଛି କି ନାଁ ?

ପ୍ରତ୍ୟେକ ଲୋକର କିଛି କାମ ଅଛି ଏ ଦୁନିଆଁରେ । ସେ କାମ ତମେ କେତେ ସୁରୁଖୁରୁ ରୂପେ ତୁଲେଇ ପାରୁଛ ?

ତମେ ଯଦି ଇଞ୍ଜିନିୟର ହିସାବରେ ସମସ୍ତଙ୍କୁ ସନ୍ତୁଷ୍ଟ କରି, କାମ ଦାମ ତୁଲେଇ ଠିକ୍ ସବୁ ସମ୍ଭାଳି ନେଇ ପାରିଲ, ତମେ ତମ ଜୀବନକୁ ପୂର୍ଣ୍ଣ କରି ପାରିଛ । ଭାଓଲିନ୍, କବିତା, ତମର ଆବେଗ ଉଚ୍ଛ୍ୱାସ, ସାହିତ୍ୟ ସଙ୍ଗ ଏ ସବୁ ବାଇପ୍ଲେ···ମାନେ···ସବ୍ ଅର୍ଡ଼ିନେଟ୍ ଟୁ ଦି ମେନ୍ ଆକ୍ସନ୍ !"

ସୁମନ୍ତ ଏମିତି ସବୁବେଳେ ସବୁ କିଛିକୁ ହାଲୁକା କରି ଦିଅନ୍ତି । ରେଖା କେତେ ଆଗ୍ରହର ସହିତ ତା' ମନ ଭିତରର କଥା କହିଥିଲା !

କାହିଁକି ସେ ଏମିତି କିଛି କୁହନ୍ତି ନାହିଁ, ଯାହା ରେଖାର ମନ ଭିତରକୁ ଛୁଇଁଯିବ ?

ସୁମନ୍ତ ହସୁଥିଲେ ।

"ତମ ପାଇଁ ଡ଼ିନର୍ ଆଣିଛି । ନେଇ ଆସେ ଗାଡ଼ିରୁ ।"

"କ'ଣ ଦରକାର ଥିଲା ?"

"ମୋ' ପାଇଁ ଦରକାର ଥିଲା ।"

ଗାଡ଼ିର ଦୁଆର ଖୋଲି ଚିଫେନ୍ କ୍ୟାରିୟର୍ ଦି'ଟା ଉଠେଇ ଆଣିଲା । ପୁଣି ଲକ୍ କରି ଆସି ଡାଇନିଂ ଟେବୁଲ୍ ଉପରେ ରଖି ଦେଲା ।

"ଏବେ ଖାଇବ ?"

"ଡେରି ଅଛି ।"

"ଜାଣେନି । ତମକୁ ଭଲ ଲାଗିବ କି ନାହିଁ । ଚାଳେ ଚାଆର କରୁଛୁ । ମୁଁ ସେତେ ଭଲ ରାନ୍ଧୁଣିଆ ନୁହେଁ ।"

ସୁମନ୍ତ ଦେଖିଲେ ରେଖା ଅଭିମାନ କରୁଛୁ ! ସେ ତା' ହାତ ହ'ଟା ଟାଣି ନେଲେ ।

"ଏ ହାତ ଯାହା ତିଆରି କରିଥିବ, ନିଶ୍ଚୟ ସ୍ୱାଦିଷ୍ଟ ହୋଇଥିବ । ସେଥିରେ ସନ୍ଦେହ ନାହିଁ । ଏତେ ସୁନ୍ଦର ହାତ କିଛି ବି ଖରାପ କରି ନ ପାରେ ।"

"ଜୟନ୍ତ ବାବୁଙ୍କ ପାଖରେ ସତରେ ମୁଁ କୃତଜ୍ଞ । ସେଦିନ ସେ ସାହା କଲେ ।

ମୋ' ପରି ଗୋଟାଏ ସ୍ତ୍ରୀକୁ ପାଇଁ..."

ରେଖା ଜାଣିଥିଲା । ମିଛ କଥା । ଜୟନ୍ତ ନ ଯାଇଥିଲେ ବି ଗୁଣ୍ଡାମାନେ ସୁମନ୍ତଙ୍କର କିଛି କରି ପାରି ନ ଥା'ନ୍ତେ । ସୁମନ୍ତଙ୍କ ପତଳା ଶରୀରର ପ୍ରତିଟି ରେଖା କହୁଥିଲା, ତାଙ୍କଠାରେ କେତେ ସାହାସ ଅଛି, କେତେ ନିର୍ଭିକତା ଅଛି ।

"ମନେ ହେଉଛି ଏଠୁ ବି ମତେ ବିଦାୟ ନେବାକୁ ପଡ଼ିବ । ମାନେ... ସେମାନେ ମତେ ତଡ଼ିଦେବେ । ଲୋକ ପ୍ରତିନିଧିଙ୍କୁ ଅସନ୍ତୁଷ୍ଟ କରି ରହି ହୁଏ ନାହିଁ । ଆଉ ସନ୍ତୁଷ୍ଟ କରିବା ସପକ୍ଷରେ ମୁଁ ନୁହେଁ ।

ପାହାର ଗୋଟାଏ ପଟେ ଅନ୍ୟ ସମସ୍ତେ । ଆରପଟେ ମୁଁ ଏକା । କେମିତି ଜିତି ପାରିବ ? ଗୋଟାଏ ଅବସ୍ଥା ଆସି ଯାଇଛି, ନିଜକୁ ସାମିଲ୍ କରି ନ ପାରିଲେ ପାଦେ ଆଗକୁ ଯାଇ ହେବ ନାହିଁ ।

କେତେବେଳେ କେମିତି ସେ ସାଧାରଣ ସ୍ରୋତରେ ସାମିଲ୍ ହେବା ପାଇଁ ମୁଁ ଚିନ୍ତା ନ କରୁଛି ତା' ନୁହେଁ, କିନ୍ତୁ ମୋ' ଭିତରର ସତ୍ତା ପାଇଁ ତା' ଗ୍ରହଣୀୟ ନୁହେଁ ।"

ସୁମନ୍ତଙ୍କର ଧୀର, ବେଦନାର୍ତ୍ତ କଣ୍ଠସ୍ୱରରୁ ରେଖା ଠିକ୍ ଭାବେ କିଛି ବୁଝି ପାରୁ ନ ଥିଲା ହୁଏତ । ତେବେ ଜାଣୁଥିଲା, ଏଇ କେତେ ଦିନ ହେବ କିଛି ଗୋଟାଏ ତାଙ୍କୁ ଯନ୍ତ୍ରଣା ଦେଇ ଚାଲିଛି ।

"ପ୍ରତିଟି ଦିନ ଅଭିଶପ୍ତ ଭାବେ ମୁଁ ଶଙ୍କିତ ହୋଇ ଯାଉଛି...ବାପ୍ତବତା-ଠାରୁ । ନୂଆ ନୂଆ ସମସ୍ୟାର ମୁକାବିଲା କରିବା ମୋ' ପାଇଁ କଷ୍ଟକର ହୋଇ ଉଠୁଛି ।"

କ'ଣ ସୁମନ୍ତ କହୁଥିଲେ, ସେ ବିଷୟରେ ରେଖା ସଠିକ୍ ଧାରଣା କରି ପାରୁ ନ ଥିଲା । ତେବେ·· ଏଇ ବୋଧେ ପ୍ରଥମ ଥର ପାଇଁ ସୁମନ୍ତ ତାଙ୍କ ଚନ୍ଦ୍ରାକୁ ଖୋଲି ଦେଇଛନ୍ତି ରେଖା ପାଖରେ । ନ ହେଲେ ତ ସବୁବେଳେ ସେ ମନେ ହୁଅନ୍ତି ଦୂରର ମଣିଷ ପରି !

"ମୋ' ପରି ଗୋଟାଏ ମଣିଷ··ଯାହା ପାଇଁ ସବୁବେଳେ ଜୀବନଟା ହେଇ ଆସିଛି ଗ୍ରୀଷ୍ମ ପରି ମୁଁ ସବୁବେଳେ ଜୀବନକୁ କୁହୁଡ଼ିଆ ମଣିଛି । କେମିତି ବା ସାମ୍ନା କରି ପାରିବି ଏ ନଗ୍ନ ବାସ୍ତବତାକୁ ?"

ସେ ନୀରବ ହେଇଗଲେ । ତାଙ୍କ ମୁହଁରେ ଫୁଟି ଉଠିଲା ଉଦାସ ହସ ଖଣ୍ଡେ ।

ବାହାରୁ ଦମ୍କାଏ ଥଣ୍ଡା ପବନ ପଶି ଆସିଲା ଘର ଭିତରକୁ ।

ସୁମନ୍ତଙ୍କ ଆଖି ମୁହୂର୍ତ୍ତିକ ପାଇଁ ରେଖା ଉପରେ ଲାଖି ରହିଲା । ସେଥିରେ ଥିଲା ସପ୍ରଶଂସ ଦୃଷ୍ଟି ।

ପୁଣି କେମିତି ଅସଂଲଗ୍ନ ହୋଇଗଲା ସେ ଗୃହାଣୀ ।

ସେ ଗୁହିଁ ରହିଲେ ଝରକା ବାଟେ ।

ହୁଁ · ଏମିତି ।

ସୁମନ୍ତ ବେଳେ ବେଳେ ସୂର୍ଯ୍ୟ ପରି ଉତ୍ତାପ ଦିଅନ୍ତି ତ ପୁଣି ବେଳେ ବେଳେ ଅକସ୍ମାତ୍ ଅସ୍ତ ହୋଇ ଯା'ନ୍ତି ତାକୁ ଗୋଧୂଳିର ଶୀତଳତା ଓ କୁହୁଡ଼ି ଭିତରେ ଛାଡ଼ି ଦେଇ ।

ରେଖାର ଇଚ୍ଛା ହେଉଥିଲା··ଆଲିଙ୍ଗନ ଭିତରେ ଆବଦ୍ଧ କରି ତାଙ୍କୁ ଫେରେଇ ଆଣନ୍ତା ସେ ଅନ୍ୟମନସ୍କତା ଭିତରୁ । ଏତେଟା ଅନ୍ୟମନସ୍କତା କ'ଣ ?

ରକ୍ତ ମାଂସର ମଣିଷ ଆମେ !

କେକାଣି···ଗାୟତ୍ରୀ ଅପା ହୁଏ ତ ବୁଝୁଥିବ ଏ ଅଜବ୍ ମଣିଷର ଅନ୍ୟ-ମନସ୍କତା, ଅବୋଧତା, ସ୍ୱପ୍ନ, ଜ୍ୟୋତ୍ସ୍ନା, ଜଟିଳତା ସବୁ କିଛିକୁ !

"ଆଜି ତମ ସହିତ ଗପିବା ପାଇଁ ମୁଁ ଆସିଛି···ତମେ ଯେତେବେଳ ପର୍ଯ୍ୟନ୍ତ କ୍ଳାନ୍ତ ନ ହେଇଛ । ଡ୍ରାଇଭର୍‌କୁ ଛାଡ଼ି ଆସିଛି ସେଇଥିପାଇଁ ।

ଡେରି ହୋଇଗଲେ ବି ମୋ' ପାଇଁ ଅସୁବିଧା ନାହିଁ ।"

"କ'ଣ କହୁଛ ତମେ ?"

"ସତ କହୁଛି ସୁମନ୍ତ ! ନିଜକୁ ହାଲ୍‌କା କରି ଦେବା ପାଇଁ ।" ତା' ଇସ୍ତ ସ୍ୱରୂପରେ ବି କଣ୍ଠସ୍ୱର ତା'ର ଓଜନିଆ ହୋଇ ଯାଇଥିଲା, "ଏତେ କଷ୍ଟ ମୋ' ପାଇଁ ଅସହ୍ୟ ହୋଇ ପଡ଼ୁଛି ।"

ଆହତ ଦୃଷ୍ଟିରେ ସୁମନ୍ତ ଚାହିଁ ରହିଲେ ।

"ତମେ ଥରେ କହିଥିଲ ନାଁ ? ତମ ଗୁହରେ ମୋ'ର ଦାନ୍ତ ଲାଗିଚ ?"

ସୁମନ୍ତ କହିଲେ—"କିନ୍ତୁ ସେ ତ ଅତୀତର କଥା ରେଖା ! ଅତୀତ କ'ଣ କେବେ ଫେରି ଆସେ ? ଆମେ ପରସ୍ପର ପାଇଁ···ଅନ୍ତତଃ ଏ ବିଷୟରେ ଅତୀତ ହୋଇ ଯାଇଛେ ।"

ରେଖା ହାତ ଦୁ'ଟାକୁ ନିଜ ପାପୁଲି ଭିତରେ ସେ ଜୋର୍‌ରେ ଚିପି ଧରିଲେ ।

ଗୋଟାଏ ଗଭୀର ନିଃଶ୍ୱାସ ନେଇ କହିଲେ—"ଏ ସବୁ ବିଷୟ ଆଲୋଚନା କରିବା ଅନୁଚିତ୍ । ମୁଁ ଗାୟତ୍ରୀକୁ ଖୁବ୍ ଭଲପାଏ ।"

ରେଖାର ମୁଣ୍ଡ ଉପରେ ହାତ ରଖି ଶ୍ରେଷ୍ଠ ପିଲାଟିକୁ ବୁଝେଇବା ପରି କହିଲେ—

"ମୁଁ ଜାଣେ, ତମେ କ୍ଲାନ୍ତ, ତମ ମନରେ ଅନେକ ଯନ୍ତ୍ରଣା । ସେଇଥିପାଇଁ ତମେ ଚାଲି ଆସିଛ ମୋ' ପାଖକୁ···କିଛିଟା ବୋଝ ଓହ୍ଲେଇ ଦେବା ପାଇଁ ।

ରେଖା ଆଖି ଟେକି ଚାହିଁଲା । ସେମିତି ପ୍ରଥମ ଥର ପାଇଁ ସେ ଦେଖିଲା···ସୁନ୍ଦର ସ୍ଥିର ଆଖିରେ ତାଙ୍କର କେତେ ମର୍ଯ୍ୟାଦା, କେତେ ଗାରିମା···କେମିତି ପାହାଡ଼ିଆ ଗ୍ରୁଭଙ୍କା ହୃଦ ପରି ନିଷ୍ଟଳ !

ଅସ୍ୱସ୍ତିରେ ଲୁହ ହାତ ପାପୁଲିରେ ମୁହଁ ଲୁଚେଇ ସେ କହିଁ କହିଁ ହୋଇ କାନ୍ଦି ଉଠିଲା ।

ସୁମନ୍ତ କେବେ ବି ଭାବି ନ ଥିଲେ···ରେଖା ଏମିତି କାନ୍ଦି ପାରେ । ସେ ଜିଦ୍ଧି କରି ପାରେ । ଗୋଡ଼ ହାତ ଛୁଟି ପାରେ, କାଚଗ୍ଲାସ ଗୋଟାକ ପରେ ଗୋଟାଏ ଭାଙ୍ଗି ଦେଇ ପାରେ । କିନ୍ତୁ ରେଖା [illegible] ସେ ଏମିତି କାନ୍ଦେ !

ମନଟା ତାଙ୍କର ହଠାତ୍ କୋମଳ ଏବଂ ଦରଦୀ ହୋଇଗଲା । ଆବେଗରେ ସେ ଆହୁରି ପାଖକୁ ଲାଗି ଆସିଲେ । ତୋଳି ନେଲେ ଦୁ' ହାତରେ । ଛାତି ଉପରକୁ ଆଉଜେଇ ଆଣିଲେ ।

"ଛିଃ ! ତମ ପରି ଝିଅ କାନ୍ଦନ୍ତି ? ସ୍ମରୁଣା ଜୀବନକୁ କି ଆଉ ଧରି ହୁଏ ! ମାନେ କିଛି ହୁଏ ଶୁଖିଲା ଫୁଲର ପାଖୁଡ଼ା ଗୋଟେଇବାରେ ?

ସେ ସ୍ପର୍ଶରେ କି କୁହୁକ ଥିଲା କେଜାଣି···ସେ ପତଳା, ରଜ୍ ଶରୀରରେ କି ମାୟାଜାଲ ଥିଲା କେଜାଣି···ରେଖାର କଳା ଧୂମର ଆଖିରେ ଗୋଟାଏ ଉଷ୍ଣଶୀତଳ ଉତ୍ତେଜନା ଫୁଟି ଉଠିଲା । ଲୁହଧୂଆ ମୁହଁ ଟେକି ଚାହିଁଲା । ମାଘ ମାସର ଶୀତ ପରବର୍ତ୍ତୀ ଅଧା ଭୁଲା ବସନ୍ତ ଯେମିତି ସବାର୍ ହୋଇ ଗଲା ଅକସ୍ମାତ୍ । ସେଇ ବସନ୍ତ···ଯାହାର ଅବିବେକତା ତା'ର କାମନାମାନଙ୍କୁ ଆଦ୍ୟ ଯୌବନରେ ତେଜି ରଖୁଥିଲା ।

ଅଧା ଖୋଲା ଓଠ ଦୁଓଟି ଥର ଥର ଥରୁଥିଲେ ।

ଛାତି ଭିତରଟା···ସାରା ଦେହ···ଯେମିତି ତରଳି ଯାଉଥିଲା ।

ସୁମନ୍ତଙ୍କ ମୁହଁ ନଇଁ ଆସୁଥିଲା ଧୀରେ ଧୀରେ । ନାଲି ଓଠ ପାଖରେ ଅଟକି ଗଲା । ହଠାତ୍ ସେ ରେଖାକୁ ଦୋହଲେଇ ଦେଲେ ।

"ନାଁ···ସ୍ନେହ କ'ଣ ?···"

ରେଖାର ବେକମୂଳ ବନ୍ଧ ଉଠିଲା । ଫିଟି ପଡ଼ିଲା କେଶ । ମୁହଁ ଘୋଡ଼େଇ ହୋଇଗଲା । ଆଶ୍ଚର୍ଯ୍ୟ ଚକିତ ହୋଇ ସେ ଶାଣିତ ଦୃଷ୍ଟିରେ ଚାହିଁ ରହିଲା । ଏତେ ଅଣ୍ଡାରେ ବି ସୁମନ୍ତଙ୍କ କପାଳ ଉପରେ ବିନ୍ଦୁ ବିନ୍ଦୁ ଝାଳ । ସାରା ଶରୀରଟା ଟାଣି ହୋଇ ରହିଛି ଗୁଣଦିଆ ଧନୁ ପରି ।

"ଅରେ କୁହ ସୁମନ୍ତ ! କୁହ, ତମେ ମତେ ଭଲ ପାଅ ବୋଲି ?"

"ହଁ ଭଲ ପାଏ ।

ତମର ଜିଦ୍, ତମର ସାହସ, ତମଠାରେ ଜଳୁଥିବା ନିଆଁ···ସବୁ କିଛିକୁ ମୁଁ ଭଲ ପାଏ ।

କିନ୍ତୁ···କେମିତି ବୁଝେଇବି ତମକୁ ?"

ତା'ପରେ ସେ ହଠାତ୍ ନୀରବ ହୋଇଗଲେ । ଧୀରେ ଧୀରେ ସେଇ ଔଦାସିନ୍ୟ ଫୁଟି ଉଠିଲା ତାଙ୍କ ଚାହାଣୀରେ । ସେ ଯେମିତି ପୁଣି ହୋଇଗଲେ ଦୂରର ମଣିଷ ।

ଝରକା ଦେଇ ମାର୍ଗଶୀରର ହେମାଳ ପବନ ପଶି ଆସୁଥିଲା ।

ରେଖା ଗୁହିଁଲା, କେତେ ପ୍ରତ୍ୟୟ ଏ ମଣିଷଟା ପାଖରେ ! ନାଁ ! ସେ ଏ ଆତ୍ମାର ପବିତ୍ରତାକୁ ନଷ୍ଟ ହେବାକୁ ଦେବ ନାହିଁ । ସୁମନ୍ତ ସବୁ ଦିନ ପାଇଁ ଗାୟତ୍ରୀ ଅପାର ସ୍ୱାମୀ ହୋଇ ରହନ୍ତୁ । ସେ ନିଜକୁ ଦୂରେଇ ରଖିବ ।

ଆସ ଡାଇନିଂ ଟେବୁଲ୍‌କୁ । ତମେ ଖାଇବ । ତା'ପରେ ମୁଁ ଫେରିଯିବି । ତମ ପାଇଁ ଚକୁଳି ପିଠା ଆଣିଛି, ତମେ ପରା ଭଲ ପାଅ ।''

( ୧୬ )

ଗାୟତ୍ରୀ ଯୋଉଦିନ ଫେରି ଆସିଥିଲା ପୁତ୍ର ସନ୍ତାନ ସହିତ, ସେ ଦିନ ସୁମନ୍ତଙ୍କ ପାଇ ତା' ଆଖିରେ ଆଖିଏ ଲୁହ ଥିଲା । ସୁମନ୍ତଙ୍କୁ ଦେଖିବା ମାତ୍ରେ, ଲୁହର ଝରଣା ଫିଟି ପଡ଼ିଥିଲା । ତାକୁ ଏମିତି ଲାଗିଥିଲା, ଯେମିତି ଏ ଆନନ୍ଦର ଜୁଆରକୁ ସେ ସହ୍ୟ କରି ପାରିବ ନାହିଁ ।

ପୁଅ ନାଁ ରଖା ଯାଇଥିଲା ''ଅଶୋକ ପ୍ରିୟଦର୍ଶୀନ'' । ସମସ୍ତେ କହୁଥିଲେ ସେ ଠିକ୍ ବାପ ପରି ହୋଇଛୁ । ଗାୟତ୍ରୀର ଗ୍ରୁହ ଫୁଲି ଉଠିଥିଲା, ଜନ୍ମ ହେବା ପରେ ସୁମନ୍ତଙ୍କ ପାଖକୁ ପ୍ରଥମ ଚିଠିରେ ସେ ଲେଖିଥିଲା ''ପୁଅ ଠିକ୍ ତମ ପରି ହୋଇଛୁ । ପାଦ ଦ'ଟା ଅବିକଳ ତମରି ପାଦ ।''

ଗାୟତ୍ରୀ ଖୁବ୍ ପତଳା ହୋଇ ଯାଇଥିଲା । ମୁହଁଟା ରକ୍ତହୀନ, ଶେତା ଦିଶୁଥିଲା । କଟକରେ ଡାକ୍ତରମାନଙ୍କୁ ଦେଖାଇବାରେ ଅନୁପମ ଆଦୌ ଅବହେଳା କରି ନ ଥିଲେ । କିନ୍ତୁ ସେମାନଙ୍କ ମତରେ ସେମିତି କିଛି ଖାସ୍ ଟ୍ରବ୍‌ଲ୍ ନ ଥିଲା । ସନ୍ତାନ ପ୍ରସବ ପରର ଦୁର୍ବଳତା । ସେଥିପାଇଁ ଗୁଡ଼ାଏ ଟନିକ୍‌ର ବଡ଼ ବାକ୍‌ସଟାଏ ବି ଗାୟତ୍ରୀ ସହିତ ଆସିଥିଲା ।

ବାରମ୍ବାର ଅଳ ପଡ଼ୁଥିଲେ ବି ଘରର ଟିକି ନିଖି କାମ ସେ କରୁଥିଲା । କିଛି ବାରଣ ମାନୁ ନ ଥିଲା । ଔଷଧ ଖାଇବାକୁ ଭୁଲି ଯାଉଥିଲା । ସବୁବେଳେ ଠିକ୍ ମନେ ପକେଇ ଔଷଧ ଦେବା ସୁମନ୍ତଙ୍କ କାମ ହୋଇ ଯାଇଥିଲା ।

ଗାୟତ୍ରୀ ପହଞ୍ଚିବାର ସପ୍ତାହେ ପରେ ସୁମନ୍ତ ଯାହା ଆଶା କରୁଥିଲେ ସେଇଆ ହେଲା । ସୁମନ୍ତଙ୍କର ବଦଳି ଆଦେଶ ଆସି ପହଞ୍ଚିଗଲା । ସେଥିରେ ନିର୍ଦ୍ଦେଶ ଥିଲା ଯାଙ୍ଗେ ଯାଙ୍ଗେ ନୂଆ ଲୋକାଲ୍ ଆରେଞ୍ଜ୍‌ମେଣ୍ଟ୍‌ରେ ରିଲିଭ୍ ହୋଇଯିବା ପାଇଁ ।

ସାମନ୍ତରାୟ ସାହେବ ଆଦେଶ ଦେଇ ଥିଲେ ପର ଦିନ ବିରୂପାକ୍ଷବାବୁଙ୍କ ଦାୟିତ୍ୱ ହସ୍ତାନ୍ତର କରି ସେ ଭାରମୁକ୍ତ ହେବେ ।

ବଦଳି ସେଇ ସମ୍ବଲପୁରରେ ଜାତୀୟ ରାଜପଥ ଇନ୍‌ଭେଷ୍ଟିଗେସନ୍ ସବ୍‌ଡିଭିଜନ୍ ।

ସୁମନ୍ତଙ୍କର କିନ୍ତୁ କିଛି ଭାବାନ୍ତର ନ ଥିଲା । ଭଲ ହେଇଛି । ଏ ଝମେଲାରୁ ମୁକ୍ତ । ସେ ସ୍ୱାଧୀନ ଭାବରେ ସର୍ଭେ କରିବେ । ନିର୍ବାହୀ ଯନ୍ତ୍ରୀ ଅତି ଭଲ ଲୋକ । ଅବଶ୍ୟ ସେଠି କାହା ଭଲ ମନ୍ଦରେ କିଛି ଯାଏ ଆସେ ନାହିଁ ।

ସୁମନ୍ତ ଫୋନ୍‌ରେ କଥା ହୋଇଥିଲେ । ପ୍ରଭାକର ମିଶ୍ର କହିଲେ—ଆସନ୍ତୁ । ସବ୍‌ଡିଭିଜନ୍‌ଟା କେବେଠୁ ଖାଲି ପଡ଼ିଛି । ଯାହାର ପୋଷ୍ଟିଂ ହେଉଛି, ଧରାଧରି କରି କାନ୍‌ସେଲ୍ କରେଇ ଦେଉଛନ୍ତି । ମୁଁ ଜାଣେ, ଆପଣଙ୍କର ଆପତ୍ତି ନ ଥିବ । ଆମର ଆପଣଙ୍କ ପରି ଲୋକ ଦରକାର । ଅନେକ କାମ ଏଠି ବାକି ପଡ଼ିଛି । ଏନ୍.ଏଚ୍. ବସ୍ତାଳିଶରେ ମାନେଶ୍ୱରଠାରେ ତ ଗୋଟାଏ ନୂଆ ପୋଲ ହବ । ତା' ଛଡ଼ା ଅନେକ ପୋଲ ପାଇଁ ସର୍ଭେ କରିବେ । ଆମେମାନେ ଏଠି ଗୋଟାଏ ଫୁଟ୍‌ବଲ୍ ଟିମ୍ ପରି । ଖାଲି ଅସୁବିଧା—ଘର ନାହିଁ । ସେ ଘରଟା ଛାଡ଼ିବେ ନାହିଁ । ଆମେ ଗଭର୍ଣ୍ଣମେଣ୍ଟ୍ ଲେଭଲ୍‌ରେ ଅର୍ଡ଼ର କରେଇବା ।

ଅର୍ଡ଼ର ପାଛେ ପାଛେ ବିରୂପାକ୍ଷବାବୁ ଆସିଥିଲେ । ଦେବୀ ଦାସ ମଧ୍ୟ । ବିରୂପାକ୍ଷବାବୁ ଦୁଃଖ କଲେ । କହିଲେ ! ସେଇଥିପାଇଁ ମୁଁ ଆସୋସିଏସନ୍ ମିଟିଂକୁ ପ୍ରଥମର ବର୍ଜନ କରେ । ହଇଓ ! ଏମାନଙ୍କର କି ଆସୋସିଏସନ୍ ? ସମସ୍ତେ ତ ନିଜ ନିଜ ସ୍ୱାର୍ଥ ପାଇଁ ବ୍ୟଗ୍ର ! ପଲିଟିସିଆନ୍‌ମାନଙ୍କର ରାମ୍‌ରାଜ୍ୟ । ଆପଣ ଯେ ଏଫ୍.ଡ଼ି.ଆର୍. କାମ ଏତେ ଶୀଘ୍ର ଓ ଏତେ ନିଖୁଣ ଭାବେ ସାରିଲେ, ତା'ର ପୁରସ୍କାର ବର୍ଷକ ଭିତରେ ବଦଳି ।

ଏଠି କାହାର ମୂଲ୍ୟାୟନ ହୁଏ ନାହିଁ କାମରେ । ଆପଣଙ୍କର ମାପକାଠି ଆପଣ କେତେ ଦୂର ବଡ଼୍‌ମାନଙ୍କ କଥା, ନେତାମାନଙ୍କ କଥା, ଡାଇରେକ୍ଟର୍‌ମାନଙ୍କ କଥା ଠିକ୍ ରୂପେ ବୁଝି ପାରୁଛନ୍ତି । କୋଉ ଲେଭଲ୍‌ରେ କେମିତି ର୍ୟାପୋର୍ଟ ରଖିଛନ୍ତି ।

ଏଠି ଲୋକଙ୍କର କାମ କ'ଣ ଜାଣିଛନ୍ତି ?

କାନ୍ଦୁଥିବ, ଯାହା ପାଇବ ବାନ୍ଧୁଥିବ । ଯେମିତି ଝିଅମାନେ ବାପଘରେ କରିଥା'ନ୍ତି । ଆପଣ ଦେଖିବେ, ଆପଣଙ୍କ ଫେୟାର୍‌ୱେଲ୍‌ରେ ସାମନ୍ତରାୟ କେମିତି କହିବ ।

ଏମାନେ ଲଗିଛନ୍ତି ଇଞ୍ଜିନିୟର ସେକ୍ରେଟାରୀ ହେବେ । ଆମକୁ ଶାସନ କରିବେ । ଆମ ଜାତି ଭାଇ ! ମୁଁ କହିଲି ଅବଶ୍ୟ ଜାତିଗତ ଭାବେ ଠିକ୍ । କିନ୍ତୁ ଇଞ୍ଜିନିୟର୍ କ'ଣ ଶାସନ କରିବେ ଭାଇ ? ଯୋଉମାନେ ସାରା ଜୀବନ ଶାସିତ ହୋଇ ହୋଇ ହାଁକି ହାଁକି କହି କହି ବଢ଼େଇ ଦେଇଛନ୍ତି, ସେମାନେ କି ଶାସନ କରିବେ ? ମେରୁ ହାଡ଼ ତ ଭାଙ୍ଗି ଯାଇଛି । କରିବା ପାରିବେ କୋଉଠୁ ? ବରଂ ମନ୍ତ୍ରୀଙ୍କ କଥାକୁ ଆହୁରି ଅନୁଗତ ଭାବେ କାର୍ଯ୍ୟକାରୀ କରିବେ । ମନ୍ତ୍ରୀ ଦୟା କଲେ ସେକ୍ରେଟାରୀରୁ ପବ୍ଲିକ୍ ସର୍ଭିସ୍ କମିଶନ, କି କୋଉ କର୍ପୋରେସନ୍, କି କୋଉଠିକି ଚାଲି ଯାଇ ପାରିବେ । ଆଉ କିଛି ଦିନ ଅଧିକା ଠାକ ଯାଇ ପାରିବେ ଚାକିରୀରେ । ଇଞ୍ଜିନିୟର୍ ସେକ୍ରେଟାରୀଙ୍କ ସମୟରେ ଦେଖିବେ, ବହୁତ୍ ମନ୍ତ୍ରୀ ବାଧ୍ୟତାମୂଳକ ଭାବେ ଅବସର ନେବେ । ଜାତିଭାଇ କି ନାଁ ।!

ଆଉ ଆମର ବା କ'ଣ ହୋଇଯିବ ? ଏଇନେ ତ ଦେଖୁଛନ୍ତି ! ଏହି ପାହ୍ୟାରୁ ଉଠି ଉଠି ଉପରକୁ ଯାଇଥିବା ହାକିମମାନେ ଭୁଲି ଯାଉଛନ୍ତି ଯେ ସେମାନଙ୍କର ଯୋଗ୍ୟତା ଆମଠାରୁ ଅଧିକ ନୁହେଁ । କେବଳ ଆମ ଆଗରୁ ଜନ୍ମ ହୋଇଛନ୍ତି ଯାହା । ସେମାନେ ସେକ୍ରେଟାରୀ ହେଲେ ଆମକୁ ତ ଚ୍ୟାମ୍ବର୍‌ରେ ପଶିବାକୁ ବି ଦେବେ ନାହିଁ !

ତା' ଛଡ଼ା ବୁଢ଼ା ଇଞ୍ଜିନିୟର୍ କେତେ ଦିନ ପାଇଁ ସେକ୍ରେଟାରୀ ହେବ ? କିଏ ଦି' ମାସ, କିଏ ଚାରିମାସ, କିଏ ଛ' ମାସ । ତା'ର ଆଉ ବା କି ଆଗ୍ରହ ଥିବ ସରକାରୀ କାମରେ ?

ଭାଇ ! ମୋ'ର ବ୍ୟକ୍ତିଗତ ମତାମତ ଆଇ.ଏ.ଏସ୍. ଅଫିସର୍ ସେକ୍ରେଟାରୀ ହେଉ । ତା' ରୁମ୍‌କୁ ଗଲେ ଅନ୍ତତଃ ବସିବା ପାଇଁ କହିବ । କିଛି ଇନ୍‌ହିବସନ୍ ନ ଥିବ ତା'ର । ମନଟା ତ ଖୋଲା ଫାଙ୍କା ଥିବ !

ଆପଣ ଯାହା ଶୁଣୁଛନ୍ତି ଏଇ ମିଟିଂ ଫିଟିଂରେ···ଇଞ୍ଜିନିୟର୍ ସେକ୍ରେଟାରୀ ହେଲେ ଏମିତି ହେବ, ସେମିତି ହେବ, ହାତୀ ହବ, ଘୋଡ଼ା ହବ ସବୁ ବେକାର କଥା । କିଛି ବୋଲି କିଛି ହେବ ନାହିଁ । କ୍ୟାଡ଼ର୍‌ର ଏକ୍‌ସ୍‌ପ୍ୟାନ୍‌ଶନ୍ ସେମିତି କିଛି ହେବ ନାହିଁ ।

ଆମର ଆଉ ପ୍ରମୋଶନ୍ ନାହିଁ ବୋଲି ମୁଁ ଧରି ନେଇଛି । ଉପରେ ତିନିଶହ ଅଛନ୍ତି ବର୍ଷେ ଦି ବର୍ଷ ତଫାତ୍‌ରେ । ସେଥିରେ ପୁଣି ଅନେକଙ୍କ ବୁଦ୍ଧିମାନ ବାପାମାନେ ପୁଅମାନଙ୍କର ବୟସ କମେଇ ଦେଇଛନ୍ତି ଯଥେଷ୍ଟ । ଜନ୍ମ ହେଉ ହେଉ ମ୍ୟାଟ୍ରିକ୍ ପାଶ୍ କରିଗଲେ । ଆଉ ଲାଇନ୍ କ୍ଲିଅର୍ ହବ ନାଁ । ତମର ପ୍ରମୋଶନ୍ ହବ ?

ଆମେ ସବୁ ସର୍କସ୍‌ର ସେଇ ନବୋଧ ବୁଢ଼ା ଗଧ । ବୁଝିଲେ ? ଜାଣିଛନ୍ତି ସେ କଥା ?''

ସୁମନ୍ତ ପଚାରିଥିଲେ, ''କୋଉ କଥା ?''

''ବୁଢ଼ା ଗଧ କଥା ଜାଣି ନାହାନ୍ତି ଯଦି ଶୁଣିବା ହୁଅନ୍ତୁ ।

ସର୍କସରେ ଖେଳ ଦେଖାଉଥିବା ଗଧଟାଏ ଥିଲା । ସେ ବେଶ୍ ବୁଢ଼ା ହୋଇ ଯାଇଥିଲା । ତଥାପି ତା'ର ବଦଳି ହୋଇ ପାରି ନ ଥିଲା । ସର୍କସ୍‌ର ସୁନ୍ଦରୀ ଝିଅମାନେ ଯେତେବେଳେ ଦୋଳି ଖେଳୁଥା'ନ୍ତି ଗଧ ପଥର ଗୋଳେଇ ଭିତରେ ଠିଆ ହୋଇଥାଏ । ଦେଖୁଥାଏ । ଦିନେ ସର୍କସର ମ୍ୟାନେଜର୍ ସେ ଝିଅମାନଙ୍କୁ କହିଲା—ଦେଖ ! ଏକ୍‌ବାର୍ ଠିକ୍ ଖେଳ ଦେଖେଇବ । କେହି ଜଣେ ହେଲେ ବି ଯେମିତି ଦୋଳିରୁ ଖସି ନ ପଡ଼ । ଯଦି କେହି ଖସି ପଡ଼େ, ତାକୁ ମୁଁ ଏଇ ବୁଢ଼ା ଗଧ ସାଙ୍ଗରେ ବାହା କରିଦେବି । ହଁ ସତ କହୁଛି । ଝିଅମାନେ ଖିଲ୍ ଖିଲ୍ ହୋଇ ହସିଲେ ।

ଗଧ ମନର ଅନ୍ଧ କନ୍ଧ ଭରିଗଲା ଆନନ୍ଦରେ । ସେଇ ଦିନଠୁ ଗଧ ଗୁହିଁ ରହିଥାଏ ଏକ ଲକ୍ଷ୍ୟରେ ଦୋଳି ଖେଳକୁ । ଅପେକ୍ଷା କରିଥାଏ କେତେବେଳେ ଝିଅଟାଏ ଦୋଳରୁ ଖସି ପଡ଼ିବ ଜାଲ ଉପରେ, ଆଉ ତା'ର ଭାଗ୍ୟ ଫିଟିଯିବ ।

ତା'ପରେ···ଦିନେ କିଛି ଗୋଟାଏ ବିପର୍ଯ୍ୟୟ ଘଟିଗଲା ସର୍କସ୍‌ରେ । ଅନ୍ୟ ଜନ୍ତୁମାନେ କେମିତି କେଜାଣି ଖସିଗଲେ ଜନ୍ତାରୁ । ଗଧ ତ ଆଗରୁ ହିଁ ମୁକ୍ତ ଥିଲା । ବାଘ ଭାଲୁ ଇତ୍ୟାଦି ଜନ୍ତୁମାନେ ସର୍କସ୍ ଛାଡ଼ି ଚାଲିଯିବା ଅବସ୍ଥାରେ ଗଧକୁ ଡାକିଲେ । କହିଲେ, ସୁଯୋଗ ମିଳିଛି, ଚାଲ୍ ଏଠୁ ପଳେଇବା ।

ଗଧ ଏକ ରହସ୍ୟମୟ ହସ ହସି ମୁଣ୍ଡ ହଲେଇଲା । ନାଁ ! ତମମାନଙ୍କ ପ୍ରତି ମୋ'ର ଶୁଭେଚ୍ଛା ଅଛି ବନ୍ଧୁଗଣ ! ତମେ ଯାଅ । କିନ୍ତୁ···ମୁଁ ଯାଇ ପାରିବ ନାହିଁ । ସେମାନେ ପଚାରିଲେ, ''କାହିଁକି ?'' ଗଧ ସେମିତି ସ୍ୱପ୍ନାଳୁ ଚାହାଁଣୀରେ ଚାହିଁ ରହି କହିଲା, ''କିଛି ଗୋଟାଏ ମତେ ଏଠି ଅଟକେଇ ରଖିଛି ।

ତମମାନଙ୍କର ସିନା କିଛି ଫ୍ୟୁଚର୍ ପ୍ରସ୍‌ପେକ୍ଟସ୍ ନାହିଁ । ବଟ୍ ଆଇ ହାଭ୍ ପ୍ରସ୍‌ପେକ୍ଟସ୍ ।''

ବୁଝିଲେ ?

ଭାଇ ! ବନ୍ଧୁମାନଙ୍କ ଅପ୍ରିୟ ହେଲେ ବି ମୁଁ ଏମିତିକା ଅଖାଡ଼ୁଆ କଥା ସବୁ କହୁଥାଏ । ମତେ ଯାହା ଠିକ୍ ଲାଗେ । ମୋ'ର ତ ମାଡି ଫିଟି କିଛି ନାହିଁ ।

ଡାକ୍ତରମାନେ ମୃତ୍ୟୁକୁ ଅପେକ୍ଷା କରୁଥିବା କ୍ୟାନ୍‌ସର୍ ପେସେଣ୍ଟ୍, ହାର୍ଟ ପେସେଣ୍ଟ, କଡ୍‌ନି ପେସେଣ୍ଟ ମାନଙ୍କଠାରୁ ପଇସା ନେଉଥିବା ବେଳେ, କୋଉ ଲକ୍ଷପତି ଠିକାଦାର୍‌ଠାରୁ ପଇସା ନେବା ମୁଁ କେବେ ଅନ୍ୟାୟ ମଣି ନାହିଁ ।

ମାଡବାଗିମାନଙ୍କ ପ୍ରତି ମୋର ଅବଶ୍ୟ ପ୍ରଚଣ୍ଡ ସମ୍ମାନ ରହିଛି ।

...ବହୁତ୍ ଲେକ୍‌ଚର୍ ମାରଲିଣି ।"

ବିରୂପାକ୍ଷବାବୁ ସବୁବେଳେ ପରିବେଶକୁ ଆନନ୍ଦ ମୁଖର କରି ଦିଅନ୍ତି । ଯେତେବେଳେ ଆସନ୍ତି, ହସେଇ ହସେଇ ବେଦମ୍ କରନ୍ତି ।

ସୁମନ୍ତ କହିଲେ, "ମୋ'ର କିନ୍ତୁ କିଛି ଦୁଃଖ ନାହିଁ ସତରେ ! ମନେ ହେଉଛି ଭଲ ଲାଗିବ । ତା' ଛଡ଼ା ଏଇ ଘରେ ତ ରହିବି ! ଆପଣଙ୍କ ସଙ୍ଗରେ ଗପିବାକୁ ବହୁତ ସମୟ ମିଳିବ ।"

ସେଦିନ ସନ୍ଧ୍ୟାରେ ଅଫିସର୍ ଷ୍ଟାଫ୍‌ସବୁ ବିନୀତ ଭାବେ ଜଣେଇଲେ ଯେ ..ସେମାନେ ଖୁବ୍ ଅଳ୍ପ ଦିନ ଭିତରେ ସୁମନ୍ତଙ୍କଠାରୁ ଅଜସ୍ର ମମତା ପାଇଛନ୍ତି । ଏ ସିବ୍‌ଡ଼ିଭିଜନ୍‌କୁ ତାଙ୍କ ପରି ଅଫିସର୍ ଆଗରୁ କେବେ ଆସି ନ ଥିଲେ । ଭବିଷ୍ୟତରେ ବି ଆସିବାର ସମ୍ଭାବନା ନାହିଁ । ସାର୍‌ଙ୍କୁ ବିଦାୟ ଦେବାର ବେଦନା ସେମାନେ ପ୍ରକାଶ କରିବା ପାଇଁ ଅସମର୍ଥ । ପରଦିନ ସନ୍ଧ୍ୟାରେ ସେମାନେ ଗୋଟାଏ ବିଦାୟ କାଳୀନ ଡିନର୍‌ର ବନ୍ଦୋବସ୍ତ କରିଛନ୍ତି । ସମ୍ବଲପୁରର ଇଞ୍ଜିନିୟରିଂ ବିଭାଗମାନଙ୍କର ସବୁ ବଡ଼ ବଡ଼ ଅଫିସର୍‌ମାନଙ୍କୁ ଡକା ଯାଇଛି ।

ଆପଣଙ୍କୁ ସୁବିଧା ହେବ ତ ?

...ହେବ ନାହିଁ କାହିଁକି ?

ଆମେ ସାର୍ ଗ୍ରାଣ୍ଡ୍ ସ୍କେଲ୍‌ରେ କରିବୁ ।

ସୁମନ୍ତ ହସିଲେ, "ହଉ !"

ସୁମନ୍ତ ଠିକ୍ ବୁଝି ପାରୁ ନ ଥିଲେ, ଏମାନେ ତାଙ୍କ ବଦଳିରେ ସତରେ ଆନନ୍ଦିତ କି ଦୁଃଖିତ । ଯାହା ବି ହେଲେ, ତାଙ୍କ ପାଇଁ କିଛି ଫରକ୍ ନ ଥିଲା ।

ପରଦିନ ସକାଳେ କ୍ୟାସିଅର୍‌ବାବୁ ଆସି କହି ଦେଇଗଲେ, ସାର୍ ! ମିସେସ୍‌ଙ୍କ ପାଇଁ ଆମେ ଡିନର୍ ପଠେଇବୁ । ଦୟା କରି ଘରେ ରୋଷେଇ କରିବେ ନାହିଁ ।

ଗାୟତ୍ରୀ ମନା କରନ୍ତେ, କ୍ୟାସିଅର୍ ସାନ୍ତୁବାବୁ କହିଲେ, ନାଁ ! ଏଇଟା କେମିତି କଥା ? ଦ'ଜଣ ମଣିଷଙ୍କ ସଂସାର । ଆପଣ ଘରେ ରୋଷେଇ କରିବେ ? ଆମ ତରଫରୁ ଆପଣଙ୍କୁ ପ୍ରାର୍ଥନା ।

ସାନ୍ତୁବାବୁ ଯୋଡ଼ ହସ୍ତରେ ଠିଆ ହୋଇ ଥିଲେ ଦାୟଗ୍ରସ୍ତ କନ୍ୟା-ପିତାଟିଏ ପରି ।

ଗାୟତ୍ରୀ କହିଲେ, ହଉ ହେଲା ? ସେମିତି ସିନା କହୁଥିଲି ! ମୋ'ର କାଲୁ ସତରେ ଇଚ୍ଛା ଥିଲା ଭୋଜି ଖାଇବା ପାଇଁ !

ଆପଣଙ୍କର ଯୋଉ କଥା !

ଲସର ପସର ହୋଇ ସାନ୍ତୁବାବୁ ଚାଲିଗଲେ ।

ବନ୍ଧୁ ଇଞ୍ଜିନିୟରଙ୍କର ଗାଡ଼ି ସେଦିନ ଲାଗିଥିଲା ବୁକ୍‌ସ୍ଟଲ୍ ଅଫିସ୍ ଆଗରେ । ଭଲ ହୁଇସ୍କି ବୋତଲ ସବୁ ଖୋଲା ଯାଉଥିଲା ସାହେବମାନଙ୍କ ପାଇଁ । ସାହେବମାନେ ପିଉଥିଲେ ଶକ୍ତି ମିଶ୍ରଙ୍କ ରୁମ୍‌ରେ । ଓ୍ୱାର୍କସର୍କାର୍‌ଙ୍କଠାରୁ ଏସ୍.ଓ.ଙ୍କ ପର୍ଯ୍ୟନ୍ତ ଓ କିରାଣୀ ଭାଇମାନେ ପିଉଥିଲେ ଷ୍ଟୋର ଭିତରେ । ସଦର ମହକୁମା ଏମ୍. ଓ. ଖାଲି ଏପଟ ସେପଟ ଦଉଡ଼ୁ ଥିଲେ । ସାହେବମାନେ ଯେମିତି ପ୍ରଚୁର ଉପଭୋଗ କରନ୍ତୁ ଭୋଜିଟା ।

ନିଜ ରୁମ୍‌ରେ ଏକା ଏକା ବସିଥିଲେ ସୁମନ୍ତ । କୋଉଟାଏ ମାଗାଜିନ୍ ଉପରେ ଆଖି ବୁଲାଇ ଥିଲେ । ଗର୍ଜ ଦେଇ ପାରୁଥିଲେ ଘଣ୍ଟା ବେଳୁ ବରୂପାକ୍ଷ ବାବୁଙ୍କୁ ।

କେତେବେଳେ କିଏ ଜଣେ ପଣ୍ଡି ଆସୁଥିଲା, ପଚାରୁଥିଲା, "ସାର୍ ! କ'ଣ ଦରକାର ? କଷା ମାଂସ ଆଣିବି ? ସ୍ନାକ୍ସ୍ ଆଣିବି କି ?"

ସୁମନ୍ତ କହୁଥିଲେ, "ନାଁ ! କିଛି ଦରକାର ନାହିଁ ।"

ସେ ଯେମିତି ଏଇ କଥାକୁ ଅପେକ୍ଷା କରୁଥିଲା । ଚାଲି ଯାଉଥିଲା ପୁଣି ମିଶିଯିବା ପାଇଁ ସ୍ରୋତରେ ।

ପିଆ ପିଇ ଚାଲିଥିଲା ଏବଂ ରାତି ବଢ଼ି ବଢ଼ି ଯାଉଥିଲା । ରାତି ଏଗାରଟାରେ ବରୂପାକ୍ଷବାବୁ ବାର୍ ଭିତରୁ ଖସି ଆସି ସୁମନ୍ତଙ୍କୁ କହିଲେ, "ଆପଣ ଅନେକ କଷ୍ଟ ପାଇଲେଣି ମୁଁ ଜାଣେ । ଡିନର୍ କେତେବେଳୁ ରେଡ଼ି ହେଲାଣି । ସେମାନଙ୍କୁ ଡାକି ଡାକି ମୁଁ କ୍ଲାନ୍ତ । ନାଁ ହାକିମମାନେ, ନାଁ ତଳିଆମାନେ, କେହି ବି ଉଠିବାକୁ

ପ୍ରସ୍ତୁତ ନୁହନ୍ତି । ସାମନ୍ତରାୟ ଉଠିଲେ ତ ଅନ୍ୟମାନେ ଉଠିବେ ! ସାମନ୍ତରାୟ ସୁପ ନ ବୁଡ଼ିବା ପର୍ଯ୍ୟନ୍ତ ଉଠିବାଲୋକ ନୁହେଁ । ଆଉ...ଆପଣଙ୍କର...ମାନେ ବର୍ତ୍ତମାନ ମୋ'ର...ଷ୍ଟାଫ୍ ସବୁ ବ ମେଘ ଡ଼ଙ୍କାରେ ।

ମୁଁ ବର୍ତ୍ତମାନଠୁ ଏଇଠି ରହିବି ଆପଣଙ୍କ ପାଖରେ ।"

ସୁମନ୍ତ କହିଲେ, "ସେଥିରେ କିଛି ଯାଏ ଆସେ ନାହିଁ ।"

"ନାଁ...ନାଁ ..ଏଇଟା ଆପଣଙ୍କର ଫେୟାରୱେଲ୍ ନୁହେଁ, ସେମାନେ ଆପଣଙ୍କର ଫ୍ୟୁନେରାଲ୍ କରିବା ମତଲବ୍‌ରେ ଅଛନ୍ତି ।"

ଘଣ୍ଟାଏ ପରେ ସେମାନେ ଖାଇବା ଟେବୁଲ୍ ପାଖକୁ ଆସିଲେ କାହାର ବି ମନରେ ନ ଥିଲା ଯେ ..ଏଇଟା ଗୋଟାଏ ଫେୟାରୱେଲ୍ ।

ସମସ୍ତେ ଯେମିତି ଭାବୁଥିଲେ, ସେ ଗୋଟାଏ ଭୋଜି ଯୋଉଠିକି ଅନ୍ୟମାନଙ୍କ ସହିତ ସୁମନ୍ତ ବି ନିମନ୍ତ୍ରିତ ।

କୌଣସିମତେ ଭୋଜି ସରିଲା । ହାକିମମାନେ ଚଳି ଚଳି ଗାଡ଼ିରେ ବସିଲେ । ସୁମନ୍ତ ଚାଲି ଚାଲି ଏକାଠି ଆସିଲେ ବିରୂପାକ୍ଷଙ୍କ ସହିତ ।

ବିରୂପାକ୍ଷ କହିଲେ –"ଆପଣ ଆଜି କିଛି ଖାଇଲେ ନାହିଁ ପ୍ରାୟ । ମୁଁ ତ ଦେଖୁଥିଲି । ଚିକେନ୍ ତ ଆପଣ ଖାଆନ୍ତି ନାହିଁ । ତା'ଛଡ଼ା ସବୁଥିରେ ତେଲ ଭାସୁଥିଲା । ଆପଣଙ୍କ ରୁଚି ବହିର୍ଭୂତ ଖାଦ୍ୟ । ମୁଁ ସେମାନଙ୍କୁ ବାରମ୍ବାର କହୁଛି, ତମେ ସମନ୍ତଙ୍କ ପାଇଁ ଯାହା କରୁଛ କର ! ହେଲେ ସୁମଂତବାବୁ ମାଛ ଭଲ ପାଆନ୍ତି । ତାଙ୍କ ପାଇଁ ଅଲଗା ଦହି ମାଛ କର । ଗ୍ରେଟ ମାଛ ପୋଡ଼ା ପୋଡ଼ି କର । ଛେନା ତରକାରୀଟାଏ କର । ସେ ଆଜିର ଏଷ୍ଟିମ୍‌ଡ୍ ଗେଷ୍ଟ ।"

ସୁମନ୍ତ ନୀରବ ରହିଲେ । ତାଙ୍କ ପାଖରେ କୌଣସି ଉତ୍ତର ନ ଥିଲା ।

ଘରେ ପହଞ୍ଚି ଗାୟତ୍ରୀଙ୍କୁ ପଚାରିଲେ—"ତମ ପାଇଁ ସେମାନେ ଖାଇବା ପଠେଇଲେ ?"

ଗାୟତ୍ରୀ କହିଲେ—"କିଛି ବୋଧହୁଏ ଅସୁବିଧା ହେଇଥିବ । ତମେ ଠିକ୍ ଠାକ୍ ଖାଇଛ ? କୌଣସି ଭୋଜିରେ ତ ତମେ ଭଲ କରି ଖାଇ ପାର ନାହିଁ ।"

"ମୁଁ ବି ଖାଇ ପାରି ନାହିଁ । ସତରେ ! ବେଶ୍ ଭୋକ ଲାଗୁଛି । ଟେରେଣ୍ଡି ଟିକେ କରି ପାରିବ ? ରାତି ଅବଶ୍ୟ ଗୋଟାଏ ହେଲାଣି । କିନ୍ତୁ କିଛି ନ ଖାଇଲେ ତ ମତେ ନିଦ ହେବ ନାହିଁ !

ଗାୟତ୍ରୀ ତରବରରେ ସ୍ନେହେଇଘରେ ପଶିଲେ । ସେଇ ମୁହୂର୍ତ୍ତରେ କେକାଣି କାନ୍ଦିକି···ସୁମଂତଙ୍କର ଇଚ୍ଛା ହେଲା ··ସେ ହେଲେ କାନ୍ଦ ପକାଂତେ !

ତାଙ୍କ ପାଖରେ ବୋଧହୁଏ ପ୍ରକୃତରେ ଗୋଟାଏ କିଛି ଦୋଷ ଅଛି । ନ ହେଲେ, ସବୁବେଳେ ତାଙ୍କ ପ୍ରତି ଏମିତି ହେଉଥାଏ କାହିଁକି ? କାହିଁକି ତାଙ୍କ ପାଇଁ ଗାୟତ୍ରୀ ବି ଏତେ ଯନ୍ତ୍ରଣା ପାଆନ୍ତି ? ଯେମିତି·· ସେ ଗାୟତ୍ରୀଙ୍କୁ ଧାରଣ କରିବା ପରିବର୍ତ୍ତେ ଗାୟତ୍ରୀ ତାଙ୍କୁ ଧାରଣ କରି ଚାଲିଛନ୍ତି ।

ଅଥଚ···ସବୁ ଭିତରେ···କେମିତି ହସି ପାରନ୍ତି ଗାୟତ୍ରୀ ଏତେ ପବିତ୍ର, ନିର୍ମଳ ହସ ?

ଗାୟତ୍ରୀ କୁହନ୍ତି, ଏ ସାରା ସଂସାରରେ ତମେଇ କେବଳ ଭାବି ପାର । ଅନ୍ୟମାନେ ନିଜ ଛଡ଼ା ଅନ୍ୟ କାହା ବିଷୟରେ ଭାବିପାରନ୍ତି ନାହିଁ । ସେମାନଙ୍କର ସେ ସାମର୍ଥ୍ୟ ନାହିଁ ।

କିନ୍ତୁ ··ଯୋଉମାନେ କିଛି ଭାବି ପାରନ୍ତି ନାହିଁ, ସେଇମାନେ ଏ ସଂସାରରେ ଖୁବ୍ ଖୁସିରେ ଆଆନ୍ତି ସତରେ !

ସୁମଂତଙ୍କ ସହକର୍ମୀମାନେ ଜୁଆରରେ ପଡ଼ିଛନ୍ତି । ସେମାନଙ୍କର ଗତି ଆଗକୁ । ଆଉ ସୁମଂତ ଭଟ୍ଟାରେ । ସେ ପଛକୁ ଠେଲି ହୋଇ ଯାଉଛନ୍ତି । କିନ୍ତୁ ସେ ବାଟ ତ ସୁମଂତ ଆପଣା ଛାଏଁ ବାଛି ନେଇଛନ୍ତି !

ଗାୟତ୍ରୀ ପଶି ଆସିଲେ ବେଡ୍ ରୁମ୍‌କୁ । ସୁମଂତଙ୍କ ହାତଟାକୁ ଟାଣି ଆଣିଲେ । "ଛି ! ମୁଣ୍ଡରେ ହାତ ଦେଇ କ'ଣ ବସିଛ ? ସେମିତି ବସନ୍ତି ? ଆସ । ମୁଁ ବାଢ଼ିଲିଣି ।

ତାଙ୍କ ଓଠରେ ସାନ ପିଲାର ହସ ପରି···ଫୁଲ ପରି···ପବିତ୍ର ହସ । ସେ ହସ ସୁମଂତଙ୍କର ସବୁ ଦୁଃଖ, ସବୁ ଯାତନା ଧୋଇ ଦେବା ପାଇଁ ସମର୍ଥ ।

# ( ୨୩ )

ବର୍ଷେରୁ ଅଧିକ ବିତି ଯାଇଥିଲା ।

ଅଶୋକ ପ୍ରିୟଦର୍ଶନ ଚାଲି ଶିଖିଥିଲା । ସୁମନ୍ତ ସ୍ପେ ଇନ୍‌ଭେଷ୍ଟିଗେସନ୍ ସବ୍‌ଡ଼ିଭିଜନ୍‌ରେ ପ୍ରକୃତରେ ଖୁସି ଥିଲେ । କେମିତି ଗୋଟାଏ ଉତ୍ସାହ, ଉଦ୍ଦୀପନା ଆସି ଯାଇଥିଲା । କ୍ୟାନ୍‌ସ୍ ଜୋତା ପିନ୍ଧି ସକାଳ ଆଠଟାରୁ ଅନ୍ୟମାନଙ୍କ ସହିତ ମିଶି ସର୍ଭେ କରିବା·· ବାରଟା ବେଳେ ସେଇଠି ଗଛମୂଳେ ପରଟା ଆଳୁଦମ୍ ଲଞ୍ଚ୍ । ତା'ପରେ ସର୍ଭେ ଅପରାହ୍ଣ ଚାରିଟା ପର୍ଯ୍ୟନ୍ତ ।

ସବୁଜ କ୍ଷେତ ଭିତରେ, ପଡ଼ିଆ ଉପରେ ନଈକୂଳିଆ କୋଉ କଣ୍ଟାବାଡ଼ର ଚଉହଦ୍ଦି ଭିତରେ ଓ ନଗ୍ରୋଡ଼ମ୍ବର ଗ୍ରାମ ଛପର ଘରେ ରାତି ରହଣି ।

ମଲ୍ଲୀ ଫୁଲର ସୁବାସ, ଖୋଲା ଫାଙ୍କା ପବନର ଚୁମ୍ବକୀୟ ଆକର୍ଷଣ । ଟ୍ରାନ୍‌ଜିଷ୍ଟର୍ ବାଜୁଥିଲା । ରାତିରେ ପେଟ୍ରୋମାକ୍ସ ଆଲୁଅରେ ପ୍ଲଟିଂ ଚାଲୁଥିଲା । ଚୂନା ମାଛ, ନଈ ଚିଙ୍ଗୁଡ଼ି, ଡଟକା ବାଇଗଣ, ପାଣି କଖାରୁ ଯେତେବେଳେ ଯାହା ମିଳିଲା । ସୁଆଦିଆ ତରକାରୀ ।

ନୀଳ ପାହାଡ଼, ସବୁଜ ଉପତ୍ୟକାର ସ୍ୱପ୍ନିଳ ଇଲାକାମାନେ ।

ବୋଧହୁଏ ଠିକ୍ ଲୋକ ଠିକ୍ ଯାଗାରେ ପହଞ୍ଚି ଯାଇଥିଲେ । ଦିନ ସବୁ ଗଡ଼ି ଯାଉଥିଲା ସୁରୁଖୁରୁରେ ।

ସୁମନ୍ତ ଯେମିତି ସେଇ ଫେଆର୍‌ୱେଲ୍ ରାତିରେ ହିଁ ଲୁଚି ଆସିଥିଲେ··· ଭଦ୍ରତାର ଚହଦିତ ଭିତରେ ଥିବା ଶ୍ୱାପଦ ସଙ୍କୁଳ ଅରଣ୍ୟ ।

ଅନ୍ୟମାନେ ଯାହା ଅତି ସହଜରେ ଗ୍ରହଣ କରି ନେଇ ପାରନ୍ତି, ସୁମନ୍ତଙ୍କ ଦ୍ୱାରା ତ ତା' ହୋଇ ପାରେ ନାହିଁ ।

ଫେୟାରୱେଲ ରାତିରେ ଖାଇବା ଟେବୁଲ୍ ଉପରେ ସାମନ୍ତରାୟ ସାହେବ ମଦ ନିଶାରେ କହୁଥିଲେ, "ବୁଝିଲ ଶର୍ମା ମିଶ୍ରେ !

ଏଇ ବଡ଼ ଇଜ୍ ଜେଲସ୍ ଅଫ୍ ଇଞ୍ଜିନିୟରସ୍ ! ସମସ୍ତେ ଇଞ୍ଜିନିୟରଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଚାଲିଛନ୍ତି । ଖାଲି ହିଂସା ଛଡ଼ା ଆଉ କିଛି ନୁହେଁ । ଏମାନଙ୍କର କ'ଣ ଦରକାର ଜାଣିଚ ?

…ଫୁଲ…ବନା କଣ୍ଟାରେ ।

…ସୁଦେହନ୍ତି…ବନା ନଖରେ

…ସୁଦନ୍ତ ··ବନା ଧାରରେ ··

…ହେଃ…ହେଃ…ହେଃ…"

ଯାହେବ ହସିଲେ ଓ ଅନ୍ୟମାନେ ବ ହସିଲେ । ହସରେ ଫାଟି ପଡ଼ିଲେ ।

ସୁମନ୍ତ ! ତମେ ଟିକଏ ସ୍ୟାଣ୍ଡ଼ଷ୍ଟ ହେଇ ଯାଉଚ ·ହେ ! ଆରେ ଖୁସି ବାସିରେ ଭାଗ ନଅ । ନଜକୁ ମସଗୁଲ୍ ରଖ । ବଞ୍ଚିବା ଶିଖ ।

ସୁମନ୍ତଙ୍କର କଛୁ କହବାର ନ ଥିଲା । ବରଂ ସନ୍ଦେହ ହେଉଥିଲା, ସତରେ କ'ଣ ସେ ଧୀରେ ଧୀରେ ସ୍ୟାଣ୍ଡଷ୍ଟ ହେଇ ଯାଉଛନ୍ତ ?

କନ୍ତୁ…ଏଠି ତ ସୁମଂତଙ୍କ ପାଖରେ ଟିକଏ ବୋଲ ବଷାଦ ନାହିଁ !

ସେମାନେ ଆଜ ପିକ୍‌ନକ୍ କରବାକୁ ଆସିଛନ୍ତ ଦେଓଗଡ଼ । ବସଂତ ନବାସ । ଏକବାର୍ ଘରୋଇ ଭୋଜାଭାତ । ସୁମଂତଙ୍କ ପରବାର୍ ଓ ରେଖା । ରେଖା ବହୁତ୍ ଖୁସି ଅଛୁ । ତା'ର ଗଜଦଂତ ତନୁରେ ଅଜ ଗ୍ରଜହଂସୀର ଗତ । ଋଷି କନ୍ୟାର କେଶ ବନ୍ୟାସ । ଚଇତ ପବନ ବଙ୍ଗଳା ହତାରେ ମୁଣ୍ଡ କୋଡ଼ ମରୁଛୁ ।

ଗାୟତ୍ରୀ କହୁଥିଲେ, ଏତେ ଦନ ପରେ ଗୋଟାଏ ପିକ୍‌ନକ୍ ହେଇ ପାରଲା ଆମ ପରବାରର । କନ୍ତୁ ଜୟଂତବାବୁ ଯେ ଆସିଲେ ନାହିଁ । ଅପୂର୍ଣ୍ଣ ରହଗଲା ଆନନ୍ଦଟା ।

ରେଖା କହୁଥିଲା—ଗ୍ରୁଡ଼ ନାଁ !

ଜୟଂତ ଆସିଥା'ନ୍ତେ । ଅଂତତଃ ଗାୟତ୍ରୀ ଭଉଜଙ୍କର କୌଣସି ଅନୁରୋଧକୁ ସେ ଏମିତ ଏଡ଼େଇଦେଇ ନାହାନ୍ତ । କନ୍ତୁ · ଦନଟାଏ ପୂର୍ବରୁ ଏମିତ କିଛୁ ଗୋଟାଏ ଘଟି ଯାଇଥିଲା ଯେ…ରେଖା ବ ଚାହିଁ ନ ଥିଲା ସେ ଆସନ୍ତୁ । ଯାଆନ୍ତୁ ତାଙ୍କର ଯୁଆଡ଼େ ଇଚ୍ଛା । ବୁହନ୍ତୁ ଯୋଉଠି ତାଙ୍କର ଆନନ୍ଦ । ଏଠି …… ଏମାନଙ୍କ ମେଳରେ ସେ ଖାପ୍ ଖୁଆଇ ପାରବେ ନାହିଁ । ଏଠି ସେ ଲାଗିଥା'ନ୍ତେ ବରକ୍ତ କର ଭାବେ…ଅସହ୍ୟ ଭାବେ…ଇତର ।

ଖାଲ ଆଇ.ପି.ଏସ୍. ହେଇଗଲେ କ'ଣ ସବୁ ହେଇଗଲା ?

ଯେମିତି ତାଙ୍କର ବିନୟ ବା ଭଦ୍ରତା ବି ଗୋଟାଏ ପ୍ରକାରର ମୁକାବିଲା । ତାଙ୍କ ବିଷୟରେ ଅନ୍ୟ କାହାର ମତାମତ ପ୍ରତି ସେ ଉଦାସୀନ କିମ୍ବା ବଧିର । ନ ହେଲେ ଅସ୍ପୋଦିତ ।

ରେଖା ତାଙ୍କୁ ଏଠିକି ଆଣି ମୁଣ୍ଡ ଖରାପ କରିବାକୁ ଚାହୁଁ ନ ଥିଲା ।

ଲୋକଟା ଏମିତି ଯେ···ରେଖାର ପ୍ରତିଟି ମୁହୂର୍ତ୍ତରେ ମନେ ହେଉଥିଲା, ସେ ବାହା ହେଉଛି ସେଇ ସାଧାରଣ କଥା ପାଇଁ, ଯୋଉଥି ପାଇଁ ପୁରୁଷର ପ୍ରୟୋଜନ ନାହିଁଟିଏ । ଯଦି ଅନ୍ୟ କୌଣସି ଉପାୟରେ ସବିତା ପାଣ୍ଡ ବା କମଳି ଦାଦ ପରି ରେଖା ଆସି ଯାଇ ପାରିଥାନ୍ତା ଜୟନ୍ତଙ୍କ ହାତ ପାହାନ୍ତାକୁ । ଜୟନ୍ତ କେବେ ବି ବାହା ହେଇ ନ ଥା'ନ୍ତେ ରେଖାକୁ । ରେଖା ପାଇଁ ଯେ ଏକ ଅବଜ୍ଞା ଅପମାନ । କିନ୍ତୁ ସ୍ତ୍ରୀ' ଭିତରେ ଅନେକ ଅପ୍ରୀତିକର ପରିସ୍ଥିତିକୁ ନୀରବରେ ମୁକାବିଲା କରିବାର ସାମର୍ଥ୍ୟ ତା'ର ଆସି ଯାଇଥିଲା । ଜୟନ୍ତ ଓ ତା' ଭିତରେ ଅବା ଏକ ଅଲିଖିତ ଚୁକ୍ତି ହେଇ ଯାଇଥିଲା । ସେଇ ଚୁକ୍ତିର ସର୍ତ୍ତ ଅନୁଯାୟୀ, ରେଖା ତା' ପଥ ସମ୍ଭାଳି ନେଉଥିଲା । ଜୟନ୍ତ ତାଙ୍କ ପଥ ।

ଇତରତାର ଢେଉରେ ଏମିତି ରେଖା ଭାସି ଚାଲିଥିଲା ଭୌତିକ ନେଶାକର ନଆଁ ଜଳେଇ । ସେ ଭାବୁଥିଲା ସେ ବିଜୟିନୀ ହେଇଛି । ଚାଲିଛି ଜୟନ୍ତଙ୍କ ଦ୍ୱାରା ବିସ୍ତୁ ଯାଇଥିବା ଅଜସ୍ର ଧନ ଉପରେ ।

ତା'ର ଇନ୍ଦ୍ରଧନୁ ପରି ଆଖିପତା, ସୁନା ରଙ୍ଗର ଦେହର ସୌନ୍ଦର୍ଯ୍ୟ, ଓଠର ଆମନ୍ତ୍ରଣକୁ ଧରି ରଖିବା ପାଇଁ କୌଣସି ଶକ୍ତିଶାଳୀ ଲେନ୍ସ ନ ଥିଲା ଏ ସଂସାରରେ ।

ଯେତେବେଳେ ଗୁଁହିଲେ ଗହଣା, କେତେବେଳେ ଗୁଇନଜ୍ ତ କେତେବେଳେ କଣ୍ଟିନେଣ୍ଟାଲ୍ ଖାଦ୍ୟ, ଇଚ୍ଛା କଲେ ଦାମୀ ହୁଇସ୍କି ମଦ୍ଧ···ଏବଂ··· ଦେହ-ବାଦର ନିତ୍ୟ ନୈମିକତା, ପୌନଃପୁନିକତା ।

ବିବେକର ଦଂଶନ ଯେ ବାଧୁ ନ ଥିଲା ନୁହେଁ, ବରଂ ଅଭ୍ୟାସରେ ପଙ୍କି ଯାଇଥିଲା ।

ଗୋଟାଏ ଗୋଟାଏ ରାତିରେ ଜୟନ୍ତଙ୍କ ବନ୍ୟତା, ପାଶବିକତା ପାଖରେ ଧୋଇ ଯାଉଥିଲା ରେଖାର ସମସ୍ତ ଘୃଣା, ସମସ୍ତ ଅସୂୟା । ଲଜ୍ଜା ତାଙ୍କୁ ଗ୍ରାସ କରି ଯାଉଥିଲା । ସେ ଶଙ୍କୁଚିତ ହେଇ ଯାଉଥିଲା । ଆତ୍ମ ସମର୍ପଣର ଆନନ୍ଦରେ ସେ ଅବା ଫାଟି ପଡ଼ୁଥିଲା, ଗୋଟାଏ ପ୍ରଚଣ୍ଡ ଆବେଗ ତାକୁ ଭସେଇ ନେଉଥିଲା ।

ପରଦିନ ସକାଳର ଆଲୁଅରେ ସେ ଆଖି ଟେକି ଚାହିଁ ପାରୁ ନ ଥିଲା ଜୟଂତଙ୍କୁ । ଆନନ୍ଦ ଓ ଖୁସିଭରା ଫେଣ୍ଟାଫେଣ୍ଟି ଗୋଟାଏ କିଛି ତା' ବାଟ ଅଗୋଳି ଠିଆ ହେଉଥିଲେ ।

କିନ୍ତୁ ମଝିରେ ମଝିରେ ଏମିତି କିଛି ଘଟିଯାଏ, ରେଖା ଆଉ ସହ୍ୟ କରି ପାରେ ନାହିଁ ।

ଦିନ ଦିନ ଚଳେ ଜୟନ୍ତ ଦୁ'ଦିନ ଦୁ'ରାତି ପାଇଁ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ସାରା ରାତି ଅନେଇ ଅନେଇ ବିତିଗଲା । ସେମିତି ଆଉ ଗୋଟାଏ ଦିନ, ଆଉ ଗୋଟାଏ ରାତି । କିଛି ଖବର ଅନ୍ତର ନାହିଁ । ପୋଲିସ୍ ବିଭାଗର ଗୋପନୀୟତାକୁ ଭେଦ କରିବା ରେଖା ପକ୍ଷରେ କଷ୍ଟକର ଥିଲା । ଜୟଂତଙ୍କ ଡ୍ରାଇଭର୍‌ଟା ବି ଏମିତି ଯେ·· ସାହେବଙ୍କ ବିଷୟରେ ପଦେ କଥା ତା' ପାଟିରୁ ବାହାରେ ନାହିଁ । ଛାଇ ପରି ସେ ସାହେବଙ୍କ ସାଙ୍ଗରେ ଥାଏ, ଅଥଚ ତା' ପାଟି ଖୋଲେ ନାହିଁ ।

ସେମିତି ଷ୍ଟେନୋ । ସେମିତି ଅନ୍ୟମାନେ । ରେଖାର ମନେ ହୁଏ ଜୟନ୍ତଙ୍କୁ ସମସ୍ତେ ପ୍ରଚଣ୍ଡ ଭୟ କରନ୍ତି ।

ଦ୍ୱିତୀୟ ଦିନ ରାତି ପାହାନ୍ତାକୁ କୋଉଠୁ ଗୋଟାଏ ଫୋନ୍ ଆସିଲା । ଅପରିଚିତ ·ଲୋକର ଫୋନ୍ । ସେ କହିଲା—"ଆପଣ ବହୁତ ବ୍ୟସ୍ତ ଅଛନ୍ତି ମ୍ୟାଡ଼ାମ୍ ! ଜାଣିଲେଣି ଆପଣଙ୍କ ସ୍ୱାମୀ କୋଉଠି ?"

"କିଏ" ବୋଲି ଟେଲିଫୋନ୍‌ରେ ପଚାରଂତେ, ଲୋକଟା ମୁହୂର୍ତ୍ତେ ନୀରବ ରହିଲା । "ଜାଣି ଆପଣଙ୍କର ଲାଭ ନାହିଁ । ତେବେ ଆପଣଙ୍କର ଶୁଭାକାଂକ୍ଷୀ ନିଶ୍ଚୟ ! ଶୁଣନ୍ତୁ ! ମହାପାତ୍ର ସାହେବ ଏଇନେ "ଅଶୋକ ନିବାସ"ରେ ସବିତା ପାତ୍ରଙ୍କ ସହିତ ।

ସେ ଫୋନ୍‌ଟା ଛାଡ଼ି ଦେଲା । ବାଥ୍‌ରୁମ୍ ଗଲା । ଗାଧୋଇ ପାଧୋଇ ବ୍ରେକ୍‌ଫାଷ୍ଟ ଖାଇସାରି ସେଇଠି ବସିଛି, ଜୟଂତ ଆସିଲେ ।

ଯେମିତି କିଛି ହୋଇ ନାହିଁ ।

···ଆଃ···ଲୋକଟା କି ଅଭଦ୍ର !

ଦୁ'ଟା ଅପବାଦଥା ରାତି ବିତେଇଛି ସବିତା ପାତ୍ର ସହିତ···ଅଥଚ କୌଣସି ଭାବାଂତର ନାହିଁ ?

"କୁଆଡ଼େ ଯାଇଥିଲ ?"

"ଜାଣି ନାଁ ?"

"ନାଁ ।"

"ଅନୁମାନ କରି ପାରୁଥିବ !"

"ନାଁ !"

"ସମସ୍ତେ ଜାଣି ପାରନ୍ତି, ତମେ କେମିତି ଜାଣି ପାର ନାଁ ?"

"ମୁଁ ସ୍ତ୍ରୀ କି ନା ! ସେଇଥି ପାଇଁ ।"

"ସବୁତା ପାପଙ୍କ ସହିତ ।"

"ମୋ'ଠୁ କ'ଣ ସେ ତମୁକୁ ଆହୁରି ଭଲ ଲାଗେ ?"

ସେଇ ରହସ୍ୟମୟ ହସ ଫୁଟି ଉଠିଲା ଜୟନ୍ତଙ୍କ ଓଠରେ । ତା'ପରେ ଭ୍ରୂରୁ କୁଞ୍ଚେଇ ହୋଇଗଲା । ଗୋଟାଏ ମଟ ଓଠ ତଳକୁ ବାଙ୍କିଗଲା ।

ରେଖାର ଇଚ୍ଛା ହେଲା ସେ କାନ୍ଦନ୍ତା । କହି କହି ହୋଇ କାନ୍ଦନ୍ତା । ତାକୁଆରେ ମୁହଁମାଡ଼ି ଅସରନ୍ତି ଲୁହର ଭଣ୍ଡାରକୁ ନିଃଶେଷ କରି ଦିଅନ୍ତା ।

କି ଛଳନା ! କି ପ୍ରବଞ୍ଚନା ! !
ଏ ପ୍ରଚଣ୍ଡ ଆବେଗ, ଏ ପ୍ରମତ୍ତ ରତି କ'ଣ କେବଳ ମଦର ନିଶାରେ ?

ପୁଣି ତା' ଭିତରେ ପ୍ରଚଣ୍ଡ କ୍ରୋଧ ଜମାଟ ବାନ୍ଧିବାକୁ ଲାଗିଲା । ଓଠ ଦି'ଟା ତା'ର ଚାପି ହୋଇଗଲା କୃପଣର ଟଙ୍କା ଥଳି ପରି । ନାଁ ! ସେ କାହିଁକି କାନ୍ଦିବ ? ସେ ବି ପ୍ରତିଶୋଧ ନେଇ ଜାଣେ । ହଁ ! ସେ ବି ପ୍ରତିଶୋଧ ନେଇ ଜାଣେ ।

ଆଉ···ଠିକ୍ ସେଇଦିନ ରାତିରେ ଯେତେବେଳେ ଗାୟତ୍ରୀ କହିଲେ— "ଆପଣ ନ ଗଲେ ଅସଂପୂର୍ଣ୍ଣ ହେବ ଆମର ଆନନ୍ଦ ।" ଅତିଶୟ ବିନୟରେ ମୁଣ୍ଡ ନଇଁ ଜୟନ୍ତ କହିଲେ—"ଭାଉଜ ! ବିଶ୍ୱାସ କରନ୍ତୁ ! ମୋ'ର ଏମିତି ଗୋଟାଏ କିଛି ପ୍ରତିବନ୍ଧକ ଅଛି, ମୁଁ ଯାଇ ପାରିବିନି ।

ନ ହେଲେ, ଆପଣଙ୍କ କଥା କେବେ ଭାଙ୍ଗି ନ ଥା'ନ୍ତି । ରେଖା ମୋ' ତରଫରୁ ଦି' ଜଣଙ୍କ କାମ ତୁଲେଇ ଦେବ । ବଙ୍ଗଳା ଶଜର୍ଭି ହୋଇ ଯାଉଛି । ମୋ' ଗାଡ଼ି ତ ଯିବ । ଥାନା ବାବୁଙ୍କୁ କହିଛି ।"

"ଆଉ ଧନକୁ ରଖିଲେ ?"

"ନାଁ । ପ୍ରୋଗ୍ରାମ୍ ହେଉଛି । ଭାଙ୍ଗିବା ଉଚିତ୍ ନୁହେଁ । ଏବେ ଯାଆନ୍ତୁ । ଆଉ ଥରେ ବି ଯିବା । ଆଉ ଥରକୁ ମୁଁ ଯିବି ଆପଣମାନଙ୍କ ସହିତ । କେବେଠୁ ଆପଣ ଘରୁ ବାହାରି ନାହାନ୍ତି । ସହଜେ ତ ଆପଣଙ୍କ ସ୍ୱାସ୍ଥ୍ୟ ଭଲ ରହୁ ନାହିଁ । ଟିକିଏ ଚେଞ୍ଜ ଆପଣଙ୍କ ପାଇଁ ନିହାତି ଦରକାର । ବସନ୍ତ ଯିବାପରେ ଗୋଟାଏ ଦିନ ଆପଣଙ୍କ ମନରେ ନିଶ୍ଚୟ ପରିବର୍ତ୍ତନ ଆଣିବ ।

ମୋ'ର ଆପଣଙ୍କୁ ମାଗୁଣି, ସ୍ପେଶାଲ୍ ରିକ୍ୱେଷ୍ଟ ମୋଟେ ପ୍ରୋଗ୍ରାମ୍ କ୍ୟାନ୍‌ସେଲ୍ କରନ୍ତୁ ନାହିଁ ।"

ରେଖା ମନେ ମନେ ଭାବୁଥିଲା, ଭଲ ହେଲା । ଏଭଳି ଲୋକଙ୍କର ପ୍ରୟୋଜନ ନାହିଁ ସେଠି ।

ପାରିବାରିକ କଳହ ତ ନୋଡାର ଗୋଡ଼ି ପରି । ପିନ୍ଧିଲା ଲୋକ ଛଡ଼ା ଆଉ କିଏ ବା ଜାଣି ପାରନ୍ତା କେମିତି ?

ଯୋଉଠି ଜୟନ୍ତଙ୍କ ହାତୁଡ଼ି ପାହାର କାମ କରେ ନାହିଁ, ସୁମନ୍ତଙ୍କ ସୂକ୍ଷ୍ମ ଇଙ୍ଗିତର ଧାର ଚାଲିଯାଏ କୋଉ ଗଭୀରକୁ ସେ···

···ପାହାଡ଼ର ଗଛ ପତ୍ରରେ ଚଇତି ପବନ ପିଟୁଛି । ରେଖାର ସ୍ତ୍ରୀଦ ଭିତରଟା ବି ନାଚୁଥିଲା । ସୁମନ୍ତଙ୍କୁ ପାଖରେ ପାଇଲେ ତା'ର ସବୁବେଳେ ସେମିତି ହୋଇଥାଏ ।

ଗାୟତ୍ରୀ ଆଗପଟ ବାରଣ୍ଡାରେ ଆର୍ମ ଚେୟାର୍ ଉପରେ ବସିଥିଲେ । ଏଠି ପହଞ୍ଚିଲା ପରଠାରୁ ତାଙ୍କୁ ଟିକେ କ୍ଳାନ୍ତ ଲାଗୁଛି ।

ସେ ସୁମନ୍ତଙ୍କୁ କହିଲେ, ତମେ ଯାଅ । ରେଖାକୁ ନେଇଯାଅ । କିଛି ସମୟ

ପ୍ରଧାନ ପାଟ ପାଖରେ ବସି ଆସିବ । ଭଲ ଲାଗିବ ।

"ଏତେ ଯୋଜନା ତମ ପାଇଁ । କେବଳ ତମରି ଚେଞ୍ଜ୍ ପାଇଁ । ଅଥଚ ତମେ ଯିବ ନାହିଁ । ସେ କଥା କେମିତି ହେବ ? ଗାଡ଼ିରେ ତ ଯିବା !"

ଗାୟତ୍ରୀଙ୍କ ମୁହଁରେ ସେଇ ଆତ୍ମିକ ଅନ୍ତରଙ୍ଗ ହସ । ଯୋଉ ହସଟା ତାଙ୍କୁ ଅନ୍ୟମାନଙ୍କଠାରୁ ବହୁ ଊର୍ଦ୍ଧ୍ୱରେ ନେଇ ଥୋଇ ଦିଏ । ବ୍ୟାପି ଯାଏ ତାଙ୍କ ପାଟରେ ଥିବା ପ୍ରତିଟି ମଣିଷ ଉପରକୁ ।

"ମତେ ଏଇଠି ଭଲ ଲାଗୁଛି । ଏଇଠି ବସି ମୁଁ ଦେଖୁଥିବି ପ୍ରଧାନ ପାଟକୁ । ଏ ଜଙ୍ଗଲ ଗଛ ପତ୍ରକୁ । ସୁନ୍ଦର ପବନ । ତା'ଛଡ଼ା ଏ ଦୃଶ୍ୟଟାକୁ ନେଇ

କୋଉଠି କ'ଣ ଶାନ୍ତିରେ ବସି ହବ ?" ସେ ମମତାରେ ଗୁହିଁଲେ ତଳେ ଗୋଟାଏ ବଗ୍‌ଚ କନା କଣ୍ଢେଇ ଧରି ବସିଥିବା ଅଶୋକକୁ ।

"ତତେ ମୋ' ଗୁଣ ରେଖା ! ତୁ ଯା ! ଗାଡ଼ି ବାହାର କର । ତମେ ଯାଅ ! ତାକୁ ଟିକେ ବୁଲେଇ ଆଣିବନି ତମେ ?"

ଗାୟତ୍ରୀ ରେଖାକୁ ହାତ ଧରି ପାଖକୁ ଟାଣି ଆଣିଲେ । ଆଦରରେ ତା' ମୁଣ୍ଡ ଆଉଁସିଲେ···ଠିକ୍ ଯେମିତି ସେ ଅଳ୍ପ ସମୟ ପୂର୍ବରୁ ଆଉଁସୁ ଥିଲେ ଅଶୋକର ମୁଣ୍ଡ ।

ଏକ ଆତ୍ମୁସ୍ୱାନ ସମ୍ମାନ ଥିଲା ଯେମିତି ସେ ମୁହଁରେ । ସାମାନ୍ୟ ଟିକିଏ ଛଟପଟ ଭବ ବା ଅସ୍ୱଚ୍ଛତାର ଗ୍ଲାନି ନ ଥିଲା ସେ ଆଖିରେ । ଅବା ସେ ହାତ ଲମ୍ବି ଯାଇ ପାରିବ ଦିଗ୍‌ବଳୟ ପର୍ଯ୍ୟନ୍ତ·· ସମସ୍ତଙ୍କୁ ଆବୋରି ନେବା ପାଇଁ, ଆପଣାର କରି ନେବା ପାଇଁ ।

ରେଖା ଆଖି ଟେକିଲା । ତା' ମନର ଅତଳାନ୍ତ ଗହ୍ୱରରେ ତ ଗାୟତ୍ରୀ ଅପା ପାଇଁ କେବଳ ଅସୂୟା ହିଁ ବସା ବାନ୍ଧିଛି ! ଯେତେ ଚେଷ୍ଟା କଲେ ବି ସେ ବିରାଗ ଉପରେ ବିଜୟ ହାସଲ କରିବା ରେଖା ପକ୍ଷରେ ସମ୍ଭବ ନୁହେଁ ।

···ତଥାପି··ମନ ଭିତରେ ତା'ର କେମିତି ·ଆନ୍ତରିକତାର···ଏବଂ ପ୍ରଶଂସାର··ଗ୍ଲେଟ ଢେଉଟିଏ ଉଠିଲା । ଗାୟତ୍ରୀ ଅପାର କପୋତ୍ରୀ ପରି ଗୃହାଣୀ ଏତେ ସ୍ୱଚ୍ଛ ଥିଲା ଯେ ··ସେ କଣ୍ଠସ୍ୱର ଏତେ କୋମଳ ଥିଲା ଯେ ··କୌଣସି ନିକୃଷ୍ଟ ଚିନ୍ତା ବା ଛଳନାର ଅସ୍ତିତ୍ୱ ସେଥିରେ କଳ୍ପନା କରିଯାଇ ନ ପାରେ ।

"ଗୁଣ ପକଉଚୁ ବୋଲି ଯାଉଚ । ନ ହେଲେ ମୋ'ର ମୋଟେ ଇଚ୍ଛା ନାହିଁ ଘତରେ ତତେ ଏଠି ଏମିତି ଏକୁଟିଆ ଛାଡ଼ି ଯିବା ପାଇଁ ।"

ତା'ପରେ ସୁମନ୍ତଙ୍କୁ ବଙ୍କେଇ ଗୁହିଁ ରେଖା ଏମିତି ଗୋଟାଏ ଢଙ୍ଗରେ ଉଠି ପଡ଼ିଲା ଓ ଗୁହିଁଲା ଯେ···ଯେମିତି ସେ ଏକ ବ୍ରୀଡ଼ା କୁଣ୍ଠିତା, ଲଜ୍ଜାଶୀଳା ମେଘ କନ୍ୟା । ତା' ମ୍ଳାନିମ୍ଭ ଜଟି ଉପରେ ଅବା ଶୋଭି ପାରବ ଭରି କଳସୀଟିଏ !

···ଆଜି ସୁମନ୍ତ ଦିଶୁଛନ୍ତି ସେଇ ପୁରୁଣା ଦିନର ସୁମନ୍ତଙ୍କ ପରି । ସେଇମିତି କଳା ଘୂମର ତନ୍ଦ୍ରାବିଷ୍ଟ ଆଖି । ପତଳା ସାଟ ଭିତରୁ ଫୁଟି ଦିଶୁଛି ଦେହ । ଏଇମିତି ତ ହସୁଥିଲେ ସେ ପ୍ରଥମ ସାକ୍ଷାତର ଦିନ । ତା'ପରେ ଲାଭ ସାଙ୍ଗଥିଲା ସେ ହସ ତାଙ୍କ ଓଠରୁ । ଏବେ ପୁଣି ଫେରି ଆସିଛି । କଥା କହୁଛନ୍ତି ସେ···ବାଟ୍‌ କୋ ବାଜୁ ନାହିଁ ।

ରେଖାର ଗ୍ରୀବା ଉପରଟା ଫୁଲି ଉଠିଲା । ଏତେ ଆନନ୍ଦ ସେଥିରେ ଜମାଟ ବାନ୍ଧିବାକୁ ଲାଗିଲା ଯେ·· ଆନନ୍ଦର ଉଷ୍ଣତା ଓ ବୋଝରେ ବଙ୍କା ଉଠିଲା ସେ ଗ୍ରୀବା ।

ତାକୁ ଲାଗିଲା, ବୟସ ତା'ର ମୋଟେ ବଢ଼ି ନାହିଁ । ସେ ତରୁଣୀ ହୋଇ ଯାଇଛି କଲେଜ ଛାତ୍ରୀ । ତା' କାନରେ ଟଙ୍କାଳି ପିଲମାନଙ୍କର ମତ୍ତ ଗର୍ଜନ । ଛତରା ଟୋକାଟାର ଗୀତ—

"ତାର ଦେହକୁ ଛୁଇଁବାକୁ ମନ କରୁଛି···"

ସ୍ନାୟୁରେ ଭରିଗଲା ଏକ ପ୍ରମତ୍ତ ଆବେଗ । ମନ୍ଥେଇ ହୋଇଗଲା ଏକ ଅଶାନ୍ତ ତରଙ୍ଗ ।

ଗାଡ଼ିଟାକୁ କଣ୍ଟ୍ରୋଲ୍‌ରେ ଗଡ଼େଇ ନଉ ନଉ ବାଙ୍କ ପାଖରେ ସେ ଏତେ ଜୋର୍‌ରେ ହସିଲା ଯେ···ହସି ହସି ବେଦମ୍ ହୋଇଗଲା । ତା' ଆଖିରୁ ଲୁହ ବାହାରି ଆସିଲା ।

ସୁମନ୍ତ ବୁଝି ପାରିଲେ ନାହିଁ ସେ ହସର ତାତ୍ପର୍ଯ୍ୟ ।

ଝରଣା ପାଖରେ, ପଥର କାନ୍ଥ ଉପରେ, ତଳକୁ ଗୋଡ଼ ଝୁଲେଇ ଦୁ'ଜଣ ପାଖାପାଖି ବସିଲେ । କାହିଁ କେଉଁ ପାହାଡ଼ ଉପରୁ ଓଜାଡ଼ି ହୋଇ ପଡ଼ୁଥିଲା ପାଣି । ତଳେ ପଡ଼ି ଛନ୍‌ଛନ ହୋଇ ଉଡ଼ି ଆସୁଥିଲା ବୁନ୍ଦା ବୁନ୍ଦା ସେମାନଙ୍କ ଉପରକୁ ।

"ଆଜି ମୁଁ କେମିତି ଦିଶୁଛି ?" ରେଖା ଠିଆ ହୋଇ ପଡ଼ିଲା ମଡ଼େଲ୍‌ଟାଏ ପରି ।

ସୁମନ୍ତ ଉଠିଲେ ତା' ହାତ ଦୁ'ଟାକୁ ଧୀରେ ଶୂନ୍ୟକୁ ଟେକି ଗୋଟାଏ ଭଙ୍ଗୀମାରେ ସ୍ଥିର ରଖିଦେଲେ ।

"ଷ୍ଟାଚ୍ୟୁ !" ଟିକିଏ ଦୂରେଇ ଯାଇ ନିରେଖି ଦେଖିଲେ । "ଏ ସୌନ୍ଦର୍ଯ୍ୟର ତୁଳନା ନାହିଁ ! ତମର ବୟସ କେବେ ବି ବଢ଼ିବ ନାହିଁ ।"

କାହିଁ କେତେ ଦିନ ବିତି ଗଲାଣି, ସେମାନେ ଏତେ ନିରୋଳାରେ ପାଇ ନାହାନ୍ତି ପରସ୍ପରଙ୍କୁ ।

ରେଖା ଯେମିତି···ଏହି ପରି ଏକ ସୁଯୋଗକୁ କେବେଠୁ ଚାହିଁ ବସିଥିଲା । ଦେହକୁ ଦେହ ଲଗେଇ ବସନ୍ତା । ···ଟିକିଏ ସ୍ପର୍ଶାନୁଭୂତି ।

···କିନ୍ତୁ ସ୍ନେହ କ'ଣ ?

ସୁମନ୍ତଙ୍କ ସ୍ପର୍ଶରେ ଯେ ଆଦୌ ଉତ୍ତେଜନା ନାହିଁ ! ଶୁଚ୍ଛା ଶୀତଳତା ! ଆଗରୁ ତ···ଯେତେବେ ବି ସେ ଛୁଇଁ ଦେଉଥିଲେ···ରେଖା ଅଣ ଉଠୁଥିଲା ସବୁଜ ପତ୍ରଟିଏ ପରି ।

ବରଂ ଯେମିତି ଏ ସ୍ପର୍ଶରେ ଅଛି ବନ୍ଧୁତ୍ୱର ଉଷ୍ଣତା, ଶୀତଳ ମମତାର ପ୍ରଲେପ, ପ୍ରଶାନ୍ତି !

···କିଛି ଚାଲି ତ ଯାଇନି ପଲ୍ଲବିନୀ ତାଙ୍କଠାରୁ ତା' ପାଖକୁ ? ଆଗ ପରି ଉଠିଲାନି ପଲ୍ଲବିନୀ ତ ତା' ଗ୍ରୀବା ?

ବରଂ ସେ ଯେମିତି ନିସ୍ତରଙ୍ଗ ହୋଇଗଲା···ଉଦାସ ହୋଇଗଲା ଗ୍ରୀଷ୍ମ ପୋଖରୀ ପରି ?

···କିନ୍ତୁ କାହିଁକି ? କାହିଁକି ? ?

ସେ ଯେ ଜୀବନଠାରୁ ଆହୁରି ବେଶି ଭଲ ପାଏ ସୁମନ୍ତଙ୍କୁ !

ସୁମନ୍ତ ଚାହିଁ ରହିଥିଲେ ସିଧା ସଳଖ ରେଖାର ଆଖିକୁ । ସେଇ ପୁରୁଣା ଚାହାଣୀ । ହସୁଥିଲେ, ଯେମିତି ସେମାନଙ୍କ ଭିତରେ···କେବଳ ଆନନ୍ଦ···ଆଉ ଆନନ୍ଦ । ଆନନ୍ଦ ଛଡ଼ା ଅନ୍ୟ କିଛିର ସ୍ଥାନ ନାହିଁ ।

ସେ ଚାହାଣୀରେ ପୂର୍ବ ପରି ଦୂର ଛଡ଼ା ଭାବ ବା ଅସଲଗ୍ନତା ନ ଥିଲା ।

ରେଖା ସ୍ଥାଣୁ ଅବସ୍ଥାରୁ ଫେରି ଆସିଲା ।

"ତମେ ପରିହାସ କରୁଛ । ମୁଁ ତ ବୁଢ଼ୀ ହୋଇ ଗଲିଣି ।"

"କିଏ କହିଲା ? ଷାଠିଏ ବର୍ଷରେ ବି ତମେ ଲାଗିବ ଅଣ୍ଟ୍ରିଟିନ୍ ଝିଅଟିଏ ଭଳି । ତା'ଛଡ଼ା···ମୋ' ପାଇଁ ତ ସବୁଦିନେ ତମେ ସେଇ ଝିଅ, ପ୍ରଥମ ସାକ୍ଷାତରେ ଯିଏ ପାହାଚ ପରେ ପାହାଚ ଡେଇଁ ଆସିଥିଲା ବାଲୁକାଏ ପବନ ପରି ।

ଆଜି ବି ମନେ ଅଛି, ସେ ଦିନ ତମେ କ'ଣ ପିନ୍ଧିଥିଲ । କହିବି ?

"କହିଲ ଦେଖି ?"

"ହାଲୁକା ନୀଳ ଶାଢ଼ୀ, ନୀଳ ବ୍ଲାଉଜ, ନୀଳ ବାନ୍ଧ···ନୀଳ ପରିଟିଏ ପରି ଅନୁପମା···

ଏଇ ଚଇତ ପବନ ପରି ଉଦଣ୍ଡ । ଗୋଟାଏ ଧକ୍କାରେ ଯେ କୌଣସି ସୁରୁଘର···ମନ ଭିତରର···ସବୁ କବାଟ ଝରକା ଖୋଲି ଦେବା ପାଇଁ ସମର୍ଥ । ଫଟା ଭୂଇଁ ପାଇଁ ସବୁଜିମା ପରି···

ମୂର୍ତ୍ତିମନ୍ତ ଗୋଟାଏ ରଙ୍ଗୀନ ସ୍ୱପ୍ନ ପରି ··

"ସତେ ?"

"ହଁ ।"

ରେଖା ଗୁହୁଁଥିଲା, ସୁମନ୍ତ ଏମିତି କହି ଗୁଲିଥା'ନ୍ତେ, ଆଉ ସେ ଶୁଣୁଥାନ୍ତା । କିନ୍ତୁ, ସୁମନ୍ତ ସେଇଠି ଅଟକି ଗଲେ । ସେଇକରେ । ଯେମିତି ଅତୀତରୁ ଧୀରେ ଧୀରେ ଖସି ଆସିଲେ ବର୍ତ୍ତମାନ ଭିତରକୁ । ସ୍ୱପ୍ନରୁ ବାସ୍ତବତାକୁ ।

"ରେଖା ! ଆମେ ସ୍ୱା ଭିତରେ ଅନେକ ବାଟ ଆଗେଇ ଆସିଛେ । ବୋଧହୁଏ ଏମିତି ନିଜ ନିଜ ବାଟରେ ଗୁଲିଛେ, ଯାହା ଆମର ଇପ୍‌ସିତ ନୁହେଁ । ଯାହା ଆମର ଆକାଂକ୍ଷିତ ନୁହେଁ । କିନ୍ତୁ ଜୀବନଟା ବୋଧହୁଏ ସେଇଆ ।"

ସୁମନ୍ତଙ୍କ ଓଠରେ ଉଦାସ ହସ ଖଣ୍ଡେ ଖସି ଆସିଲା ।

"ମଝିରେ ତ ପ୍ରଚଣ୍ଡ ବିଷାଦ ମତେ ଗ୍ରାସ କରି ଆସିଥିଲା । ଏବେ ମୁକୁଳିଛି ସେଥିରୁ । ଠିକ୍ ତ ମୁକୁଳି ନାହିଁ, ଚେଷ୍ଟା କରୁଛି । ହୁଏତ କିଛିଟା ସଫଳ ହୋଇଛି ।

ସୁମନ୍ତ ଅଟକି ଗଲେ । କ'ଣ ଗୋଟାଏ ଭାବିଲେ ଯେମିତି ।

ଏଇ ଶାନ୍ତ, ସ୍ନିଗ୍ଧ ବନ୍ଧୁତା ଭିତରେ······ରେଖାର ଇଚ୍ଛା ହେଲା······ ସୁମନ୍ତଙ୍କର ଅପହଞ୍ଚ ମନର ନିସିଙ୍ଗ ଇଲାକା ଭିତରେ ଟିକିଏ ପଶିଯାଇ ହେବ କି ? ଟିକିଏ ଅଧିକା ବୁଝି ହେବ କି ତାଙ୍କୁ ?

"ଯାହା ଜୟନ୍ତବାବୁ କୁହନ୍ତି, ସତ କଥା । ସର୍‌ଭାଇଭାଲ୍ ଅଫ୍ ଦ' ଫିଟେଷ୍ଟ୍ ।"

"ଆଃ ! ଥାଉ ! ପ୍ଲିଜ୍ ! ବନ୍ଦ କର । ଜୟନ୍ତଙ୍କୁ ଆଣନା ଆମ ଭିତରକୁ । ତାଙ୍କୁ ତୁଳନା କରାଯାଇ ପାରେ ନାଁ ତମ ସହିତ । ସେ ଟିକିଏ ଅଟକି ଗଲା । "କୋଉଠି ତମର ସୂକ୍ଷ୍ମତା, ଆଉ କୋଉଠି ତାଙ୍କର ରୁକ୍ଷତା, ଉଚ୍ଛୃଙ୍ଖଳତା ? ତମର ଚନ୍ତାର ସ୍ତର ଆଉ···ତାଙ୍କର···

“ନା ରେଖା ! ତାଙ୍କ ମୋ' ଭିତରେ ଅନେକ ସାମଞ୍ଜସ୍ୟ ଅଛି । ହୁଏତ ଗୋଟାଏ ଗୁମ୍ଫର ମଣିଷ ଆମେ । ···କୋଉ ଛକଟାଏ ପାଖରେ···ବାଟ ଭାଙ୍ଗି ଅଲଗା ହୋଇ ଯାଇଛୁ ।

ମୋ'ର କେମିତି ମନେ ହୁଏ, ତାଙ୍କ ବାଟରେ ସେ ମୋ'ଠାରୁ ଆହୁରି ନୂତ୍ନ ନୂତ୍ନ ।

ସତ କଥା ଠିକ୍ ଠାକ୍ କହି ଦେବାରେ ତାଙ୍କଠାରେ ଆଦୌ କୁଣ୍ଠା ନାହିଁ । ଅଦମ୍ନବ ଭାବେ ସ୍ପଷ୍ଟବାଦୀ । ଆଶାତୀତ ଭାବେ ଖୋଲା, ଫାଙ୍କା, ଢ଼ର ପରି ସିଧା ସଳଖ । ଅଥଚ ··ମୁଁ ତ ସବୁ ବେଳେ ନିଜ ଭିତରେ ହିଁ ବାସ କରିବାକୁ ଭଲ ପାଇ ଆସିଛି !

ବୁଦ୍ଧିମାନ ସଫଳ ମଣିଷମାନେ ଅତୀତକୁ ପଛ କରି ଚାଲିଥା'ନ୍ତି ।

ମୁଁ ସବୁବେଳେ ଚାଲିଥାଏ ଶୂଳ ପରି ବିନ୍ଧୁଥିବା ସ୍ମୃତିକୁ ସାଥୀରେ ଧରି ।”

ସୁମନ୍ତଙ୍କ କଣ୍ଠରେ ଯେମିତି ଥିଲା ଅଧା ଭୁଲି ସଙ୍ଗୀତର କରୁଣ ମୂର୍ଚ୍ଛନା । ରେଖା ଶୁଣି ପାରୁ ଥିଲା···ଢେଙ୍କାନାଳ ସରକାରୀ ଘରର ଛାତ ଉପରର ସେଇ··· ଅଧା ଅନ୍ଧାର ଭିତରେ···ସୁମନ୍ତଙ୍କର ଦରଦୀ କବିତା ସବୁ ।

ସେ କବିତାରେ ଗୋଟାଏ ମୃଦୁ ଗୋପନ ସ୍ୱର ଥିଲା । ଥିଲା ପ୍ରୀତିକର ଆନନ୍ଦ ଦାୟକ ସୌରଭ ।

ସୁମନ୍ତ ପୁଣି ନୀରବ ହୋଇଗଲେ ।

ସେମାନେ କେତେ ସମୟ ଧରି ପରସ୍ପରର ଆଖିକୁ ଚାହିଁଲେ । ଅବା ଖୋଜୁଥିଲେ ଅତୀତରେ ଭାଗ ବଣ୍ଟନ କରିଥିବା ଦିନ ସବୁକୁ ।

ପରିବେଶ ହୋଇ ଉଠିଥିଲା ନିର୍ଜନ, ପରିତ୍ୟକ୍ତ···କପୋତର ବିଳାପ ପରି ।

ଆଃ···ସୁମନ୍ତ ପଛକୁ ଫେରି ଚାହୁଁଛନ୍ତି, ଯେମିତି ଗୋଟାଏ ଯୁଗ ବିତି ଯାଇଛି । କଥା କହୁଛନ୍ତି ଯେମିତି ଅନେକ ବର୍ଷ ପହଁଶ ଯାଇଛି ତାଙ୍କ ଉପରେ ।

କେତେଟା ବା ବର୍ଷ ବିତିଛି ? ଭରା ଯୌବନ ତ ଏବେ ବି ଦୁ' ଜଣଙ୍କ ଦେହରେ ଫୁଟି ହେଉଛି ।

କିନ୍ତୁ ରେଖା ନିରଖି ଚାହିଁଲା ।

ଆବସ୍ଥାର କଲ୍; ଆଉଟା ସୁନା ରଙ୍ଗର ସେ ଦେହରେ ଆଉ ପୂର୍ବର ଜ୍ୟୋତି ନାହିଁ । ମଳିନ ପଡ଼ି ଯାଇଛି ଚେହେରା । ଉଦାସ ହୋଇ ଯାଇଛି । ଅକାଳ ବାର୍ଦ୍ଧକ୍ୟର ସାକ୍ଷୀ ପରି ··ପତାକା ପରି···ଅଯତ୍ନ ବାଳ ଭିତରୁ ବାହାରି ଆସିଛନ୍ତି କେତେଟା ଧଳା କେଶ ।

···ଏଇ ମଣିଷଟା !

ସୁମନ୍ତ କ'ଣ କେବେ ବି ସତରେ ତା' ଅତୀତକୁ ଭୁଲି ପାରିବେ ? ସେ ତ ବର୍ତ୍ତମାନକୁ ଦେଖି ପାରନ୍ତି ନାହିଁ । ଭବିଷ୍ୟତ ପାଇଁ ତାଙ୍କ ମନରେ ସବୁ ବେଳେ ଏକ ଅହେତୁକ ଭୟ । ଅତୀତ ଛଡ଼ା ତାଙ୍କର ଆଉ ଗୃହ କ'ଣ ?

କେଜାଣି କାହିଁକି···ରେଖା ଆଖିରେ ଆଖିଏ ଲୁହ ଭରିଗଲା କଣ୍ଠ ପୂର୍ବାଭାସ ନ ଥାଇ ।

ସେ ଲୁହ ଧାର ଧାର ହୋଇ ଖସି ପଡ଼ିଲା ତାକୁ ତଳକୁ । ସେ ଆଉଜି ପଡ଼ିଲା ସୁମନ୍ତଙ୍କ ଛାତି ଉପରେ ।

ତା' ଜୀବନକୁ ସୁମନ୍ତଙ୍କ ଛଡ଼ା କିଏ ଆଉ ଏତେ ଉତ୍ତମ ରୂପେ ବୁଝି ପାରିଛି ? ଗୋଟାଏ ଗୃହାଣୀରେ କିଏ ଆଉ ଧରି ନେଇ ପାରିବ ରେଖାର ସବୁ ଚିନ୍ତା, ସବୁ ଆବେଗକୁ ?

ଏମିତି···ଆପଣାର ବନ୍ଧୁଟିଏ ପରି···ବିନା ଆବେଗରେ···ବିନା ଦ୍ୱନ୍ଦ୍ୱରେ··· ସୁମନ୍ତଙ୍କ ଛାତି ଉପରେ ମଥା ପାତି ଦେବାରେ କି ଆନନ୍ଦ !

( ୨୪ )

ରେଖା ଟାଇଫଏଡ୍‌ରେ ପଡ଼ି ଯାଇଥିଲା କିଛି ଦିନ ଧରି । ସେ ବିବର୍ଣ୍ଣ ଏବଂ ପାଣ୍ଡୁର ହୋଇ ଯାଇଥିଲା । ମୁହଁଟା ତା'ର ଶୁଖିଲା, ଜଣ୍ଡିଳ ଦେଖା ଯାଉଥିଲା ।

ପ୍ରଥମ ଦିନ ହିଁ ଜୟନ୍ତ ଆସିଥିଲେ ଗାୟତ୍ରୀ ପାଖକୁ । ସୁମନ୍ତ ଥିଲେ କୋଉ ସର୍ଭେ କ୍ୟାମ୍ପରେ ।

ଗାୟତ୍ରୀ ଭାଉଜଙ୍କ ଛଡ଼ା ରେଖା ପାଖରେ ଠିଆ ହେବା ପାଇଁ ଆଉ ତ ଆପଣାର ଏଠି କେହି ନାହାନ୍ତି ।

ଅଭ୍ୟାସ ବଶତଃ ଜୟନ୍ତ ବେଶ୍ କଚ୍ଛ ପିଇ ଦେଉଥିଲେ । ଯେମିତ ପନ୍ଦ୍ରଅ୍ଁ ପନ୍ଦ୍ରଅ୍ଁ ଶୁଣିଲେ ଟାଇଫଏଡ୍, ଜର ସେତେବେଳକୁ ଦଶ ଦିନ ହୋଇ ସାରିଥିଲା, ତାଙ୍କୁ କେମିତ ଅସହାୟ ଲାଗିଲା । ସାରା ଦିନର ଅକ୍ଳାନ୍ତ ପରିଶ୍ରମ ଏବଂ ମଦ ନିଶାରେ ମୁଣ୍ଡ ଠିକ୍ କାମ କରୁ ନ ଥିଲା । ଏଇ ପ୍ରଥମ ଥର ପାଇଁ ରେଖା ଅସୁସ୍ଥ ହୋଇଥିଲା । ରେଖାର ଅସୁସ୍ଥତା ଜନିତ ରୂପ ଦେଖାଇବା ପାଇଁ ସେ ସତରେ ଅସମର୍ଥ ଥିଲେ !

ଚେହେରାଟା ଭୟଙ୍କର ଏବଂ ନିଷ୍ଠୁର ଦିଶୁଥିଲେ ବ···ସେ ଯେମିତ ଭାଙ୍ଗି ପଡୁଥିଲେ ।

ସେଇ ମୁହୂର୍ତ୍ତରେ ଗାଡ଼ି ନେଇ ବାହାରି ଗଲେ । ରାତି ଦଶଟା ଉପରେ ହେବ । ଗାଡ଼ିରୁ ସୁମଂତଙ୍କ ଘର ଭିତରକୁ ଆସିଲା ବେଳେ ଜୟନ୍ତ ଲାଗୁଥିଲେ ଏକ ପ୍ରକାଣ୍ଡ ଦାନବ ପରି ।

ଦୁଆର ମୁହଁରେ ଗାୟତ୍ରୀ ଭାଉଜଙ୍କୁ ଦେଖି ସେଇଠି ଜନ୍ତୁସ୍ଥ ଅଟକି ଗଲେ । ହଠାତ୍ ଯେମିତ ବୁଝି ପାରିଲେ, ମଦ୍ୟପ ଅବସ୍ଥାରେ ସେ କାହା ଆଗରେ ଠିଆ ହୋଇଛନ୍ତି !

ଗାୟତ୍ରୀ ଭାଉଜଙ୍କ ମୁହଁଟା ଶେତା ଦିଶୁଥିଲା, ସେ କ୍ଳାନ୍ତ ଲାଗୁଥିଲେ । ଜୟନ୍ତ ଜାଣିଥିଲେ, ଗାୟତ୍ରୀ ଅସୁସ୍ଥା । ମଝିରେ ମଝିରେ ଜର ଲାଗି ରହୁଛି । ଦୁର୍ବଳ ହୋଇ ଯାଉଛନ୍ତି ଦିନକୁ ଦିନ ।

କାହିଁକ ସେ ଆସିଲେ ତାଙ୍କୁ ହଇରାଣ କରିବା ପାଇଁ ?

ତାଙ୍କ ପାଟିରୁ ପ୍ରଳାପ କଲା ପରି ବାହାରି ପଡ଼ିଲା, "ଭାଉଜ ! ଆପଣଙ୍କ ସାହାଯ୍ୟ ମୋ'ର ପ୍ରୟୋଜନ —"

ଗାୟତ୍ରୀ ଭାଉଜଙ୍କ ମମତାସିକ୍ତ ସ୍ବରବାଣୀ ଯେମିତ ମଧୁର ଥିଲା । ଅସୁସ୍ଥତା ସତ୍ତ୍ୱେ ସେ ଆଖିରେ ଥିଲା ଏକ ଉଜ୍ଜ୍ୱଳ ସ୍ନିଗ୍ଧତା ।

ସେ ନିଷ୍ପାପ ସ୍ବରବାଣୀ ଯେମିତ ଜୟନ୍ତଙ୍କ ଗାଲ ଉପରେ ଥାପ୍‌ପଡ଼୍ ପରି ବର୍ଷିଗଲା । ମଦର ନିଶା ଓହ୍ଲେଇ ଗଲା ମୁଣ୍ଡ ଉପରୁ ।

"ରେଖାକୁ ଟାଇଫଏଡ୍ ଜର । ଦଶ ଦିନ ହେଲାଣି ।"

"ଦଶ ଦିନ ହେଲାଣି ? ଏ ଯାଏ ମତେ ଖବର ଦେଇ ନାହାନ୍ତି ?"

"ଅନ୍ୟ ଡାକ୍ତର କହୁଛନ୍ତି ଟାଏଫଏଡ୍ । କିନ୍ତୁ ଆପଣ ତ ନିଜେ ବି ଅସୁସ୍ଥ ?"

"ମୁଁ ଠିକ୍ ଅଛି । ଟିକିଏ ବସନ୍ତୁ । ମୁଁ ବାହାରି ଆସେ ।"

"ଭଉଜ ! କ୍ଷମା କରିବେ ।" ଅପରାଧି ପରି ଜୟନ୍ତଙ୍କ ଆଖି ନଇଁଗଲା ତଳକୁ । "ଆପଣଙ୍କ ପାଖକୁ ଏମିତି ହଠାତ୍ ଆସିବାକୁ ପଡ଼ିବ ବୋଲି ଜାଣି ନ ଥିଲି । ମୁଁ ଟିକିଏ ପିଇ ଦେଇଛି । ଏମିତି ଗୋଟାଏ ହୀନ ମଣିଷ ମୁଁ ..."

ଗାୟତ୍ରୀ ହସିଲେ, "କିଏ କହିଲା ? ମିଛ କଥା ।"

"ମୋ' ଆଖିରେ ଆପଣ କେତେ ଉଚ୍ଚରେ, ମୋ' ମନ ଭିତରେ ଆପଣଙ୍କ ପ୍ରତି କେତେ ସମ୍ମାନ ତା' ମୁଁ କେମିତି ବୁଝେଇବି ଆପଣଙ୍କୁ ।

ଆପଣଙ୍କ ପରି ମଣିଷ ମୋ' ଜୀବନରେ ଆଉ କାହାକୁ ମୁଁ ଦେଖି ନାହିଁ ଭଉଜ !"

ଗାୟତ୍ରୀ ତରବରରେ ବାହାରି ଆସିଲେ ।

ସେଇ ଦିନଠୁ ସାତ ଦିନ କାଳ ସେ ରେଖାର ପାଖେ ପାଖେ ରହିଲେ । ତା'ର ଟିକି ନଖି ଖବର ବୁଝିଲେ । ଏମିତି ତ ତାଙ୍କୁ ସ୍ୱତରେ ନିଦ ହେଉ ନ ଥିଲା କେତେ ଦିନରୁ ।

ରେଖା ଉଠି ବସିଲା ।

ଅନୁପମ ବା ରୁନୁ ଭଉଜଙ୍କୁ ଖବର ଦିଆଯାଇ ନ ଥିଲା । ଗାୟତ୍ରୀ କହିଲେ—"ମୁଁ ତ ଅଛି ! କ'ଣ ଦରକାର ସେମାନଙ୍କୁ ବ୍ୟସ୍ତ କରିବାରେ ? ଆଜି କାଲି ଟାଏଫଏଡ୍ ଗୋଟାଏ ସାଧାରଣ ବେମାରି ।

ଜୟନ୍ତ ଆସୁଥିଲେ । ନୀରବରେ ଠିଆ ହେଉ ଥିଲେ କିଛି ସମୟ । ଫେରି ଯାଉଥିଲେ ।

ରେଖା ଦେଖିଲା, ଏଇ କେତେ ଦିନ ଭିତରେ ଯେମିତି ଜୟନ୍ତଙ୍କ ଚରିତ୍ରରେ କିଛିଟା ପରିବର୍ତ୍ତନ ହୋଇ ଯାଇଛି । ସେ ଅସମ୍ଭବ ଭାବେ ସଂଯତ ହୋଇ ଯାଇଛନ୍ତି । ଚୁପ୍‌ଚାପ୍ ହୋଇ ଯାଇଛନ୍ତି ।

ସବୁଠୁ ବଡ଼ କଥା, ମଦ ପିଉ ନାହାନ୍ତି । ପ୍ରାୟ ଘରେ ରହୁଛନ୍ତି।

ହୋଇ ପାରେ ଗାୟତ୍ରୀ ଅପାର ଉପସ୍ଥିତି ହେତୁ !

ତେବେ···ଉପରକୁ ଜୀବନଟା ତ କିଛି ଭଳି ହେବ ମନେ ହେଉଛି···ସମତଳ, ସୁଗମ, ପ୍ରଶାନ୍ତ !

କିନ୍ତୁ···କେଜାଣି କାହିଁକି···ରେଖାକୁ ଅଖାଡ଼ୁଆ ଲାଗୁଥିଲା ।

ବ୍ୟଙ୍ଗୋକ୍ତି ନାହିଁ । ବିଦ୍ରୂପ ନାହିଁ । ନାହିଁ ଉପହାସ କିମ୍ବା ପରିହାସ ।

ଯୋଉ ମମତା ଯୋଗୁ ତାଙ୍କ ଭିତରେ ଏତେ ଅସୂୟା ଜମାଟ ବାନ୍ଧିଥିଲା, କ'ଣ ହଜି ଯାଇଛି ସେ ମମତା ?

ନୀରବରେ ଜୟନ୍ତଙ୍କ ଆଖି ତାଙ୍କୁ ଅନୁସରଣ କରୁଥିଲେ ବି ମନେ ହେଉଛି, ସେ ଯେମିତି କୋଉ ଦୂରର ମଣିଷ । ତାଙ୍କ ଜୀବନର ଚଞ୍ଚଳ ଗତି, ପ୍ରାଣ ପ୍ରାଚୁର୍ଯ୍ୟର ବନ୍ୟା ଯେମିତି ଗୋଟାଏ ସ୍ଥୈର୍ଯ୍ୟ ମାତ୍ରାର ଭିତରେ ରୁଦ୍ଧି ହୋଇ ଯାଇଛି !

ରେଖା ତ ସବୁବେଳେ ଚାହେଁ···ସେ ଜୟନ୍ତଙ୍କ ମନ ଗହନର ପ୍ରଥମ ମଣିଷ ହୋଇ ରହିବ । କାହା ମନରୁ ପୁତାଏ ଖସି ଯିବା ତା' ପାଇଁ ଅସହ୍ୟ ।

କୁହନ୍ତୁ ପଛେ ଜୟନ୍ତ ? "ତମର ଦରକାର ଟଙ୍କା । ଦରକାର ଗହଣା । ପ୍ରତିଟି ମୁହୂର୍ତ୍ତରେ ନୂଆ ଶାଢ଼ୀ, ବଡ଼ ଘର, ସ୍ୟାଣ୍ଡେଲିଅର୍ ଝୁଲୁଥିବା ଦରବାର ହଲ୍ ପରି ବୈଠକ ଖାନା । ପତଳା ହାଲୁକା ମଲଚିଆ ଆଲୁଅ ତଳେ···ଓଲ୍ଡ୍ ସ୍ମଗଲର୍ ହ୍ୱିସ୍କି ( କେବେ କେମିତି ) । ଯୁଆଡ଼େ ଇଚ୍ଛା ସିଆଡ଼େ ଘୂରି ବୁଲିବାର ସ୍ୱାଧୀନତା ।

ଟଙ୍କା ତମକୁ ଖୁବ୍ ଖୁସି ରଖିଛି ? ହଁ। ଡାର୍ଲିଂ ?

ଗୋଟାଏ ଅଜବ୍ ଢଙ୍ଗର କଥା ! ବିଷାକ୍ତ ମଧୁର ! ଜୟନ୍ତଙ୍କ ଛଡ଼ା ଆଉ କେହି ସେମିତି କହି ପାରନ୍ତି ନାହିଁ । କେହି ସେମିତି ପୁଣି ହଠାତ୍ ଶୀତଳ ଏବଂ ବିଚ୍ଛିନ୍ନ ହୋଇ ଯାଇ ଆମୋଦରେ, କୌତୁକରେ ସ୍ଥିର ରହି ପାରନ୍ତି ନାହିଁ । ଶିର ଗୁଞ୍ଜିବାର ଅଦ୍ଭୁତ ଢଙ୍ଗ ।

"ଅବାଟରେ ଆସୁଥିବା ପଇସା ମଣିଷକୁ ଆଉ ସବୁ ଦେଇ ପାରେ ସିନା···ଶାନ୍ତି ତ ଦେଇପାରେ ନାଁ ।"

ରେଖାର ମୁଣ୍ଡକୁ ସିନ୍ଧ ଚଢ଼ିଯାଏ । "ହୁଁ···ହୁଁ···ମୁଁ ଖୁବ୍ ଶାନ୍ତିରେ ଅଛି । ମୋ'ର ଟଙ୍କା ଦରକାର !"

···ସେ ମଣିଷର ଏତେ ପ୍ରଶାନ୍ତ କି ସହ୍ୟ ହେଉ ନ୍ତୁ ?

ନାଁ...

ଏଇଟା କ'ଣ...ଗୋଟାଏ ଛଳନା ?

ଯେତେ ପୋଛିଲେ କ ଚଡାବାଘ ଦେହରୁ ସେ ଦାଗ ଯାଏ ?

ଏ ମଣିଷ କ'ଣ ସତରେ କେବେ ବଦଳି ପାରେ ?

ଯେମିତ ଭାବେ ସେ ଗାୟତ୍ରୀ ଅପାର ଆଦେଶ ପାଳନ କରୁଛନ୍ତି, ମନେ ହେଉଛି, ଗାୟତ୍ରୀ ଅପା ଶାସନ କରୁଛ ଏ ଲୁହାର ମଣିଷକୁ । ରେଖାକୁ ସତରେ ଖୁବ୍ ମଜ୍ଜା ଲାଗୁଥିଲା ।

କନ୍ତୁ କାହିଁକ ଏକ ହିଂସାଭାବ ମନରେ ଜାଗ୍ରତ ହେଉଛି ତା' ପ୍ରତି ?

ଅସମ୍ଭବ ଭାବେ ଦୁର୍ବଳ ଦଶୁଛି ଗାୟତ୍ରୀ ଅପା । ଘରବରେ ଚଲ ପ୍ରଚଳ ହେଉଛି ।

ରେଖା ସିନା ତା' ଅନୁଭବର ଦଶଗୁଣ ପ୍ରକାଶ କରେ ! ଗାୟତ୍ରୀ ଅପା ତ-ପ୍ରାୟ ଚୁପ୍‌ଚାପ୍ । ସବୁବେଳେ ସେଇ ମାତୃଭାବ । ସେ ଯେମିତ, ଜୟନ୍ତଙ୍କ ଭାଉଜ ନୁହେଁ, ମାଁ ! ସଖି ପଣ ତ ମୋଟେ ନାହିଁ ତା'ଠି । କାହାଠୁ ପ୍ରୋଟେକ୍‌ସନ୍ ନେବା ପାଇଁ ଚାହେଁ ନାହିଁ । ଅଥଚ ସମସ୍ତଙ୍କୁ ପ୍ରୋଟେକ୍‌ସନ୍ ଦେବା ପାଇଁ ବ୍ୟଗ୍ର ।

ରେଖା ସୁସ୍ଥ ହୋଇ ଆସିଲାରୁ ଗାୟତ୍ରୀ ଜୟନ୍ତଙ୍କୁ କହିଲେ, ତାକୁ କଛି ଦନ ପାଇଁ ଢେଙ୍କାନାଳରେ ବୁଲେଇ ଦେଇ ଆସନ୍ତୁ । ତା' ମନ ପରିବର୍ତ୍ତନ ହେବ । ଖୁବ୍ ଦୁର୍ବଳ ହୋଇ ଯାଇଛି ତ'!

ଜୟନ୍ତ କହିଲେ—ଆଜ ଉପରବେଳା ନେଇ ଯିବି ।

ମନେ ମନେ ରାଗିଗଲା ରେଖା ।

କାହିଁକ ମନା କର ପାରଲେ ନାହିଁ ?

ସେ ଠିକ୍ ଜାଣିଥିଲା । ଜୟନ୍ତଙ୍କ ଆବେଗ, ଉତ୍ତେଜନା, ଜମାଟ ବାନ୍ଧିଛି । ସେ ଯେତେବେଳେ ଆସିବେ · ଓଜନିଆ ପାଦ ପକେଇ...ଅନ୍ଧାର ଭିତରେ... ଲମ୍ବା ଲମ୍ବା ନିଃଶ୍ୱାସ ନେଇ...ରେଖା କ'ଣ ସେଇ ଭଙ୍ଗୀମାରେ ଥିବ...ଛୁଇଁ ନା ମତେ... ?

ସେ ଯେ...ଭାବିଥିବ ଯାହା, କର ବସିବ ଠିକ୍ ଓଲଟା !

...ହୋଇଯିବ...ହୁଟ୍‌ଲା...ହାଲୁକା...ସିକ୍ତ...

…ମାଘ ମାସିଆ ଶୀତ ରାତିର ଡୁଙ୍ଗୁଳା ଦେହ ପରି ଥରି ଉଠିବ ତା' ସାରା ଦେହ…ଦାନ୍ତକୁ ଦାନ୍ତ ବାଜିବ ।

ନିଃଶ୍ୱାସ ଘରେ ପଶି ପାରିବନି ।

ମୃଦୁ ଗୋପନ ସ୍ୱରରେ ସେ ଅନେକ ଅନାବନା କଥା କହିବ ।

( …ରେଖାର ସବୁଠୁ ବଡ଼ ଦୁର୍ବଳତା )

…ଠିକ୍ ଅଛି ! ଜୟନ୍ତ ଯଦି ଏତେ ବ୍ୟଗ୍ର ତ୍ରସ୍ତ ଆସିବା ପାଇଁ ଆଜି ଉପର ବେଳା, ସେ ବି ଯିବ । ଯିବ ବେଶ୍ କିଛି ଦିନ ପାଇଁ । ସହଜରେ ଆସିବାର ନାଁ ଧରିବ ନାହିଁ ।

ସେ କାହିଁକି ଏମିତି ତୁଚ୍ଛ ହେଇ ଯିବ ସେ ?

ଜୟନ୍ତ ତ ନିସ୍ପୃହ, ସମ୍ପର୍କ ବର୍ଜିତ ମଣିଷଟାଏ ପରି । ଆଗ୍ରହଶୂନ୍ୟ, ନିର୍ଲିପ୍ତ, ଉଦାସୀନ !

ତାଙ୍କର ସେ ନିଗୂଢ଼, ଗୋପନ, ରହସ୍ୟାବୃତ ଭୁଷ୍ଟତା ଯେମିତି ହଠାତ୍ ଲୋପ ପାଇ ଯାଇଛି ।

( ହେଃ… !

ତାଙ୍କ ସ୍ଥିତିର ମୂଳ ଉତ୍ସଟା କେମିତି ଉଭେଇ ଗଲା କୁଆଡ଼େ ? )

ଗାଡ଼ି କାଢ଼ିଲା ବେଳେ ରେଖା ଦେଖିଲା…ଜୟନ୍ତଙ୍କ ଆଖି ଦି'ଟା ନିରସ ଲାଗୁଛି । ସମ୍ପୂର୍ଣ୍ଣ ଭାବେ ସ୍ୱପ୍ନମୁକ୍ତ । ଉଦ୍ଦୀପନା ମୁକ୍ତ ।

"କ'ଣ ହେଇଛି ଯେ ତମର ?"

"କିଛି ନାହିଁ ତ !"

ଗାଡ଼ି ଗଡ଼ି ଚାଲିଲା ରାସ୍ତା ଉପରେ । ବୈଶାଖି ଗୋଧୂଳିରେ ଯେମିତି ପହଁରି ଯାଉଥିଲା ।

ଜୟନ୍ତଙ୍କ ଓଠରେ ସରୁ ହସ…ଆଖିରେ ସ୍ଥିର ଚାହାଣୀ…ନିରୁଦ୍‌ବିଗ୍ନ । ଗୋଟାଏ ନୂଆ ଝରଣା ଫିଟି ପଡ଼ିଥିବା ପରି । କେମିତି ଏକ ଅଦ୍ଭୁତ ଜାଗ୍ରତ ଅବସ୍ଥାରେ ଚେତନାର ମନ୍ଦ ପ୍ରଭାବରେ…ସେ ଯେମିତି ଅଲଗା ଦେଖିଛନ୍ତି । ଆଉ ଗୋଟାଏ ଜୀବ ଯେମିତି ଖୋଳପା ଛାଡ଼ି ତାଙ୍କ ଭିତରୁ ବାହାରି ଆସିଛି । ନୂଆ ନୂଆ ଦେଖୁଛି ଏ ପୃଥିବୀକୁ !

ପଡଲା ସଞ୍ଜ ଅନ୍ଧାରରେ···ପଛକୁ ପଛକୁ ଠେଲି ହୋଇ ଯାଉଛି···ଲଙ୍ଗଳା ଧାନ କ୍ଷେତ, ପାହାଡ଼, ନଈ, ବସ୍ତି, ଧୂଆଁ ଉଠୁଥିବା ଗୃହ ଛପର ଘର, ଗାଁ ଦାଣ୍ଡ···କ୍ୟାଲେଣ୍ଡରର ଛବି ପରି ଏମିତି ସବୁ ।

କେକାଣି କାଞ୍ଚିକି···ରେଖାକୁ ବି ସମ୍ମୋହିତ କରି ଦେଲା ସେ ନୀରବତା, ନଇଁ ଆସୁଥିବା ଅନ୍ଧାର ।

ଆକାଶରୁ କିଛି ଯେମିତି ଝରି ପଡ଼ୁଥିଲା ଥୋପା ଥୋପା ହୋଇ···ଇଷତ୍ କୃଷ୍ଣବର୍ଣ୍ଣ ଗୁଇ ଗୁଇଆ ବିମର୍ଷ ରାସ୍ତା ଉପରକୁ । କାନରେ ବାଜୁଥିଲା କୋଉ ବିସ୍ମୃତ ଅତୀତର ପ୍ରାଣ ସଙ୍ଗୀତ ।

କାଞ୍ଚିକ ସେ ଭାସୁଛି ଏଇ ସ୍ୱପ୍ନ ଓ ବାସ୍ତବତା ମଝିରେ ?

ଏମିତି ଦୋଳି ଖେଳୁଛି କାଞ୍ଚିକ ?

ନାକେ ଅବା ଗୋଟାଏ ଅନନୁଭୂତ ଅବସ୍ଥିତି ! ବାସ୍ତବତାକୁ ଅତିକ୍ରମ କରି ଗ୍ଲୁଲିଛି !

ରେଖା ଆଖି ଟେକି ଚାହିଁଲା ।

ଜୟନ୍ତ ଷ୍ଟିଅରିଂ ଆଗରେ ବସିଛନ୍ତି ଗୁଇଟିଏ ଭଳି । ବିଚ୍ଛିନ୍ନ, ସ୍ୱତନ୍ତ୍ର ।

···"ହେଇ !

ଜୟନ୍ତଙ୍କ ଜଙ୍ଘ ଉପରେ ସେ ଆସ୍ତେ ମୁଣ୍ଡ ଥୋଇଲା । ଜହ୍ନ ଆଲୁଅରେ ଭିଜୁଥିଲା ତା' ମୁହଁ···ଠିକ୍ ଅମରାବତୀର ଫୁଲଟିଏ ପରି ।

ଯେମିତି ଗଡ଼ି ଗ୍ଲୁଲିଥିଲା ଗାଡ଼ି ।

···କିଛି ଗୋଟାଏ କୁଆର ମାଡ଼ି ଆସୁଥିଲା ସେମାନଙ୍କ ଉପରେ ।

ହଜି ଯାଇଥିଲା ସ୍ଥାଣୁତ୍ୱ ।

···କିଛି ଆବେଗ, ଉଚ୍ଛ୍ୱାସ, ଅନ୍ଧାରୁଆ ବ୍ୟାକୁଳତା···ଆବୃତ୍ତ କରି ଆସୁଥିଲା ଯେମିତି ।

ଅବସ୍ଥାନ୍ତରର ମାନସିକ ପ୍ରକ୍ରିୟା ଗୋଟାଗୁଏ ବୁଡ଼େଇ ଦେଉଥିଲା ସେମାନଙ୍କୁ ।

···ଏକ ପ୍ରମତ୍ତ, କ୍ଷୁଧିତ ପଶୁ ପରି ଜୟନ୍ତ ନଇଁ ଆସୁଥିଲେ···କୋହ୍ୱ ଗହ୍ୱରିଆ ତାଙ୍କର ଆବେଗରେ···

ସେ ରାସ୍ତାଧାରରେ ଗାଡ଼ି ଅଟକେଇ ଦେଲେ ।

( ୨୪ )

ସୁମନ୍ତଙ୍କୁ ଯେମିତ ବନ୍ଧୁଟିଏ ପରି ପଡ଼ିହୁଏ । ସେମିତ ବୁଝି ହୁଏନା ଜୟନ୍ତଙ୍କୁ ।

କଓ ! ଗାଂଗୁଲୀ ଅପା ତମର ଭାଉଜ କୋଉବାଟେ ? ସେ ପରା ତମର ଦେଢ଼ଶାଶୁ !

ଜୟନ୍ତ କୁହନ୍ତି ''···ମୁଁ ତାଙ୍କୁ ଭାଉଜ ବୋଲି ହିଁ ଡାକିବ ! ମୋ' ଇଚ୍ଛା ! ସେଇ ରୂପରେ ତାଙ୍କୁ ଦେଖିବାକୁ ମୁଁ ଚାହେଁ । ପ୍ରଥମ ଦେଖାରେ ତ ତାଙ୍କୁ ଭାଉଜ ବୋଲି ଡାକିଥିଲି । ସେତେବେଳେ କ'ଣ ତମକୁ ବାଧା ହେଇଥିଲି ? ସେ ତ ଥିଲି ତମ ସହିତ କୋର୍ଟସିପ୍‌ର ସମସ୍ତ, ପୂର୍ବରାଗର ଦିନ ସବୁ । ସେଇ ଯେ ମନ ଭିତରେ ଭାଉଜ ରୂପରେ ବସି ଯାଇଛନ୍ତି···ବସି ଯାଇଛନ୍ତି··· ।

ଭାଉଜ ତମର ସଖି ହେଇ ପାରିବେ, ମା' ହେଇ ପାରିବେ, ହେଇ ପାରିବେ ଅନ୍ୟ ଆପଣାର ମଣିଷ । ସେତେ ପାଖରେ କ'ଣ ପାଇହେବ ଦେଢ଼ଶାଶୁଙ୍କୁ ? ସେ ତ ଆମ ଭିତରର୍ ମାମଲା ! ତମ ମୁଣ୍ଡ କାହିଁକି ବନ୍ଦ ହୁଏ ?''

ରେଖାର ହଂସା ହୁଏ ।

···ବେଳେ ବେଳେ ଜୟନ୍ତ ଏମିତ ଗୁହିଁ ରୁହନ୍ତି ରେଖା ଆଡ଼େ···ଯେମିତ ବଲେଇଟାଏ ଛକି ବସିଛି ମୂଷା ଗାତ ପାଖରେ ।

ଜୟନ୍ତ କୁହନ୍ତି—''ତମେ···ଆଉ···ସେ ?

ସିଏ ତ ଆକାଶର ଧ୍ରୁବତାରା ।

ଟୋଟାଲି ହେଲ୍‌ପ୍ ସ୍ୟାକ୍ରିଫାଇସିଂ ।''

''ଆଉ ମୁଁ କ'ଣ ?''

ତମେ··· ? ···ସତ କହିଲି ? ଅନ୍ତରଙ୍ଗ ମୁହୂର୍ତ୍ତିମାନଙ୍କରେ ତମେ ଫାଣ୍ଟାସାଇଜ୍ କରନା ତମ ସୁମନ୍ତ ଭାଇଙ୍କୁ ?

ହାଃ···ହାଃ···ହାଃ···

ଦ୍ୟାଟ୍ ଆଟଭ୍ସ୍ କ୍ଲାଇମାକ୍ସ୍ ଭଜିଲି···

ହ୍ୱାଃ···ହ୍ୱାଃ···ହ୍ୱାଃ ··

ନୋ ନେହେସିଟି ଟୁ ଭର୍‌ବାଲାଇଜ୍ ଲେଡ଼ି ! ହ୍ୱାଃ···ହ୍ୱାଃ···ମୁଁ ଜାଣେ ! କ'ଣ ନ ଜାଣେ ମୁଁ ? ( ଅସଭ୍ୟ, ବର୍ବର କୋଉଠିକାର ! )

ସନ୍ଧ୍ୟା ଗଡ଼ି ଯାଇଥିଲା ।

ଗାଡ଼ିଟାଏ ବ୍ରେକ୍ କଷି ଠିଆ ହେଲା ପୋର୍ଟିକୋ ତଳେ । ପବନ ପରି ଘର ଭିତରକୁ ପଶି ଆସିଲେ ଜୟନ୍ତ । ( ଥିଙ୍କ୍ ଅଫ୍ ଦ' ଡେଭିଲ୍ ଆଣ୍ଡ··· )

ଗାୟତ୍ରୀ ଭାଉଜଙ୍କ ଦେହ ଭଲ ନାହିଁ । ଆସି ପାରିବ ମୋ' ସାଙ୍ଗରେ ?

ଦୁଆର ବନ୍ଧରେ ଠିଆ ହୋଇଥିଲେ ଜୟନ୍ତ । ଏକା ଏକା ଗାଡ଼ି ଚଳେଇ ଆସିଥିଲେ ସମ୍ବଲପୁରରୁ ।

"କ'ଣ ହେଇଛି ?"

ଅନ୍ଧାରିଆ କୁହୁଡ଼ି ପରି ତା' ଶରୀରପଟେ ଘେରି ଗଲା ଯେମିତି ଗୋଟାଏ ଉତ୍କେଜକ ଭୟ । ମାଟି ତଳର ଭୂଇଁ ଗ୍ରେଭ୍‌ବାଲା ପରି ଦବି ଯିବାକୁ ବସିଲା ତଳକୁ ତଳକୁ ।

"ଗାୟତ୍ରୀ ଅପାର କ'ଣ···"

"ନାଁ ! ସି ଇଜ୍ ଏଲାଇଭ୍ । କିନ୍ତୁ ତମେ ଆସ । ବର୍ତ୍ତମାନ ।"

ରେଖା ତରବରରେ ପଶି ଆସିଲା ଗାଡ଼ି ଭିତରକୁ ।

ଅନୁପମ ନ ଥିଲେ । ଦିଲ୍ଲୀ ଯାଇଥିଲେ । ରୁନୁ ଭାଉଜ ବି ଯେମିତି ଘରପିନ୍ଧା ଶାଢ଼ୀରେ ବସିଲେ ଗାଡ଼ିରେ ।

"ହଠାତ୍ କ'ଣ ଏମିତି ହେଲା ?"

"ମୃତ୍ୟୁ ଅପେକ୍ଷା କରିଛି । ସେ ତମକୁ ଦେଖିବାକୁ ଚାହୁଁଛନ୍ତି !"

"କ'ଣ କହୁଛ ତମେ ?"

"ଲ୍ୟୁକୋମିଆ ।"

"ଏଁ ? ? କିଛି ହେଇ ପାରିବ ନି ? ? ?"

କ'ଣ ଆଉ ହେଇ ପାରବ ? ଆଗରୁ ଜଣା ପଡ଼ିଥିଲେ ତ ଆମେରିକା କୁ ନେଇ ଯାଇ ହେଉଥା'ନ୍ତା ବୋନ୍‌ମ୍ୟାରେ ଟ୍ରାନ୍‌ସପ୍ଲାଣ୍ଟେସନ୍ ପାଇଁ ! ଅନ୍ତତଃ ··ମୁଁ ଗ୍ରୁଡ଼ି ନ ଥା'ନ୍ତି କୌଣସି ଚେଷ୍ଟା !

ଏବେ ଟାଟା ମେମୋରିଆଲ୍ ଯାଏ ଯିବା ଅବସ୍ଥାରେ ସେ ନାହାନ୍ତି !

"ହେ ଭଗବାନ୍ !"

ରେଖା ସ୍ଥିର, ନିଶ୍ଚଳ ହୋଇଗଲା ।

"ମୁଣ୍ଡ ବୁଲେଇବା, ମଝିରେ ମଝିରେ ଜର ହେବା, ଦୁର୍ବଳ ଲାଗିବା, ବି.ପି. କମିଯିବା, ଏସବୁ ଥିଲା ଲ୍ୟୁକେମିଆର ଲକ୍ଷଣ ।

···ବନ୍ଧୁ ଅଚ୍ୟୁତ ଦାଶ କର ଯାଇଛନ୍ତି ତାଙ୍କ ପ୍ରତି ସେଇ ଅବସ୍ଥାରେ ।

ତମର ସେବା କଲାବେଳେ ବି ସେ ଭୋଗୁଥିଲେ ଲ୍ୟୁକେମିଆରେ !"

ଜୟନ୍ତଙ୍କ ମୁହଁଟା ଶେତା ପଡ଼ି ଯାଇଥିଲା । କଣ୍ଠସ୍ୱର ଶୁଭୁଥିଲା ଭଙ୍ଗା ଏବଂ କର୍କଶ ।

"ହେମୋଗ୍ଲୋବିନ୍ କମି କମି ଆସୁଛି ।

ରକ୍ତ ଦିଆ ଚାଲିଛି । ମୋ' ବ୍ଲଡ୍‌ଗ୍ରୁପ୍, ତାଙ୍କ ବ୍ଲଡ୍ ଗ୍ରୁପ୍ ସମାନ ! 'ଓ' ପଜିଟିଭ୍ । ଅନ୍ତତଃ···ଜାଣି ରକ୍ତ ଦବାର ସୌଭାଗ୍ୟ ମତେ ମିଳିଛି ।"

"କିଛି କ'ଣ ଚିକିତ୍ସା ନାହିଁ ? ଭୂରୁ କୁଞ୍ଚିକ ପଚାରିଲେ ।

"ସିମ୍‌ଟୋମେଟିକ୍ ! ଚାଲିଛି । ଦିନ ଗଡ଼େଇବା କଥା ଯାହା ।"

ରେଖା ଭାବୁଥିଲା···ଏଇତ ମାସଟାଏ ଆଗରୁ···ଗାୟତ୍ରୀ ଅପା ବଡ଼ ଭଉଣୀର ସବୁ ଦାୟିତ୍ୱ ନେଇ ବସିଥିଲା ତା' ଶଯ୍ୟା ପାଖରେ ! ଧୀରେ ଟେକି ଧରୁଥିଲା ରେଖାର ହାତ । ତା' ଅଣ୍ଟା ଗାଲ ଉପରେ ଚୁପି ଧରୁଥିଲା ରେଖାର ଆଙ୍ଗୁଳି ସବୁ ।

ସେଥିରେ ଥିଲା କେତେ ସାନ୍ତ୍ୱନା ! କେତେ ଆଶ୍ୱାସନା !

ତା' ଆଖିରେ କେବେ ତ ବ୍ୟଗ୍ରତା ପ୍ରକାଶ ପାଏନି !

ରେଖା ଆଖି ଖୋଲିଲେ ଇ ଗାୟତ୍ରୀ ଅପାର ମୁହଁ ଦେଖୁଥିଲା, ଯେତେ ଗାଢ଼ ହେଇ ଆଉ ପଛେ ।

ଜୟନ୍ତଙ୍କୁ ଆଜଃ କଳ୍ପ ପରି ସେ କହୁଥିଲା, ଆପଣ୍ଣ ! କିଛି ଖାଇ ନାହାନ୍ତି । ଆମେ ଜାଣିଛୁ ! ଆପଣଙ୍କର ବନ୍ଧୁଙ୍କ ମମତା ଅଛି ସ୍ତ୍ରୀ ପ୍ରତି ! କିନ୍ତୁ···ଏତେ ଗୁଡ଼ାଏ ସିଗାରେଟ୍ ନ ପୋଡ଼ିଲେ କ'ଣ ଆମେ ଆପଣଙ୍କ ବ୍ୟଗ୍ରତା ମାପି ପାରନ୍ତୁ ନାହିଁ ?

ନିଜେ ଅସୁସ୍ଥ ହୋଇ ପଡ଼ିବେ ଯେ !

ମୁଁ କ'ଣ ଏଠି ଦୁ'ଜଣଙ୍କର ସେବା କରିବାକୁ ଠିକା ନେଇଛି ନାଁ କ'ଣ ?

ଗାୟତ୍ରୀ ଅପା ମନରେ···ଖୁବ୍ ନିବିଡ଼ ଭାବେ ଲାଗି ଆସିପାରେ । ଅନୁଭବ କରିପାରେ । ନୀରବରେ । ଚୁପ୍‌ଚାପ୍ ।

···ରେଖା ଗ୍ରୀବା ଭିତରେ···ସବୁ ଅନ୍ଧକାରର ହାଡ଼ ଭାଙ୍ଗି ଦୀର୍ଘଶ୍ୱାସଟାଏ ଛୁଟି ଆସିଲା ।

ଜୟନ୍ତ ଖୁବ୍ ବେଗରେ ଗାଡ଼ି ଚଳାଉଥିଲେ ।

ବାହାରକୁ ପ୍ରତ୍ୟୟଯୁକ୍ତ ମନେ ହେଉଥିଲେ ବି ଭିତରେ ଭିତରେ ସେ ଭୁଶୁଡ଼ି ପଡ଼ୁଥିଲେ ।

କାହିଁକି ଏମିତି ହୁଏ ?

କାହିଁକି କାହାର ସବୁ କିଛି ଏମିତି ଗୁଳିଯାଏ ?

ହଜି ଯାଏ ?

ସନ୍ୟାସୀଙ୍କର ଅଭିଶାପ ବା ଆଶୀର୍ବାଦ ପରି !

ଯୋଉ ଧନୀ ବଣିକ ତାଙ୍କୁ ଦାଣ୍ଡ ଦୁଆରୁ ତଡ଼ି ଦେଇଥିଲା, ତା' ପାଇଁ "ତମେ କୋଟି-ପତି ହୁଅ । ତମ ଭଣ୍ଡାର ସବୁବେଳେ ପୂର୍ଣ୍ଣ ଥାଉ ।" ଆଉ ଯିଏ ତା' କୁଡ଼ିଆରେ ସନ୍ୟାସୀଙ୍କୁ ଆଶ୍ରୟ ଦେଲା, ଭଙ୍ଗା ଗୁଳିଆ ତଳେ ପଖାଳ ଭାତ ଓ ଶାଗ ଖରଡ଼ା ଦେଲା, ତା' ପାଇଁ "ଉଡ଼ି ଯାଉ ତୋ' ଭଙ୍ଗା ଗୁଳିଆ । ଶୁଖି ଯାଉ ତୋ' କୂଅ । ଭାଙ୍ଗି ଯାଉ ତୋ' ମାଟିହାଣ୍ଡି !"

ଅନୁଗମନ କରୁଥିବା ଅବୋଧ ମାଳୀ ପରି ରେଖା ବା କ'ଣ ବୁଝି ପାରିବ ?

କିଏବା ବୁଝି ପାରିବ ସେ ଅଦୃଶ୍ୟ ହାତର ଲୁଚକାଳି ଖେଳ ?

କିନ୍ତୁ···ତା' ଗ୍ରୀବାରେ···ଶୂଳ ପରି ବିନ୍ଧି ଯାଉଥିଲା ଯେମିତି କିଛି !

"···ଆଃ···

ଗାୟତ୍ରୀ ଅପା ମର ପାରେ ନାଁ ! ...ନାଁ !"

"ମୃତ୍ୟୁ ତ ଅନିବାର୍ଯ୍ୟ । ତା' ବ ବେଶୀ ଡେରି ନାହିଁ ।

କେବଳ ହୃଦସ୍ପନ୍ଦନଟାଏ ଛଡ଼ା ତାଙ୍କ ପାଖରେ ଆଉ ଅଛି କ'ଣ ? ଦେହରେ କ'ଣ ଟିକିଏ ବୋଲି ଶକ୍ତି ଅଛି ?"

ଗାଡ଼ିଟା ଅଧ ଘଡ଼ିରେ ସୁମନ୍ତଙ୍କ ଘର ଆଗରେ ଠିଆ ହେଲା । ରୁନୁ ଭାଉଜ ତରବରରେ ଘର ଭିତରେ ପଶିଗଲେ । ରେଖାକୁ ଅସମ୍ଭବ ଏକାଟିଆ ଲାଗିଲା ।

ପ୍ରଚଣ୍ଡ ଭୟରେ ସେ ଥର ଥର ଥରିବାକୁ ଲାଗିଲା ।

"ଯାଅ !"

"ତମେ ଯିବ ନା ?"

"ନାଁ" ଡ୍ରାଇଭର୍ ସିଟ୍ ଉପରେ ଗୋଟାଏ ସିଗାରେଟ୍‌ରେ ନିଆଁ ଲଗେଇଲେ ଜୟନ୍ତ ।

ଶଙ୍କିତ ପାଦ ପାତରେ ରେଖା ବୈଠକଖାନା ଦୁଆର ପାଖରେ ଠିଆ ହେଲା ।

ଦାଦା ବସିଛନ୍ତି ପଟା ଖଟର ଧାରରେ ମଇଳା ଗେଞ୍ଜି ଖଣ୍ଡେ ପିନ୍ଧି । ସୁମନ୍ତ ମନେ ହେଉଛନ୍ତି ଯେମିତି ନିଦୁଆଳ ମଣିଷଟାଏ ।

"ଗାୟତ୍ରୀ କେତେବେଳୁ ତମକୁ ଇ ଖୋଜୁଛି ରେଖା !" ସେ ଯେମିତି ଅଧା ନିଦରେ କଥା କହୁଥିଲେ ।

ରେଖାର ଗ୍ରୁଡିର ସ୍ପନ୍ଦନ ମୂହୂର୍ତ୍ତିକ ପାଇଁ ଅଟକି ଗଲା ।

"ହେ ଭଗବାନ !" ସେ ଦୁ'ହାତରେ ମୁହଁ ଲୁଚେଇ ବସି ପଡ଼ିଲା ଚୌକିଟାଏ ଉପରେ । "ମତେ କାହିଁକି ଆଗରୁ ଖବର ଦେଲ ନାହିଁ ? ଏକ ଚିତ୍କାର ଚିତ୍କାର କରି ଉଠିଲା ।

ଡାକ୍ତର ମହାପାତ୍ର ବାହାରି ଆସିଲେ ।

ତାଙ୍କ କାନ୍ଧ ଝୁଲି ପଡ଼ିଥିଲା ।

ଜମାଟ ବାନ୍ଧି ଯାଉଥିବା ସମସ୍ତଙ୍କ ଉପରେ ସେ ଆଖି ବୁଲେଇ ଆଣିଲେ ।

"ଆପଣ ଆସନ୍ତୁ । ସେ ଖୋଜୁଛନ୍ତି ।" ତାଙ୍କ ଶୀତଳ ଦୃଷ୍ଟି ରେଖା ଉପରେ ଅଟକି ରହିଥିଲା ।

ଭିତର ବାରଣ୍ଡାରେ ସେ ଧୀର ଗଳାରେ କହିଲେ—"ଆପଣ ଜାଣିଥିବେ । ତାଙ୍କର ଆଉ ବେଶି ସମୟ ନାହିଁ । ଖାଲି ଶୁଣିପାରିବେ । ସ୍ୱାତ୍ ସ୍ୟାଣ୍ଡୁ କିଛି କହିବେ ନାହିଁ । ଭବ ପ୍ରବଣତା ବଶତଃ କଦାପି କିଛି କରିବେ ନାହିଁ । ଯାଆନ୍ତୁ । ହରି ଅପ୍ !"

ଗ୍ରେଟିଆ ଘରଟା ଭିତରେ ସବୁ କିଛି ବିଶୃଙ୍ଖଳିତ, ଅସଜଡ଼ା ଅବସ୍ଥାରେ ପଡ଼ି ରହିଥିଲା । ବେଡ଼୍ ଲାଇଟ୍‌ର ମଳିଚିଆ ଆଲୁଅରେ, ଗାୟତ୍ରୀ ଦିଶୁଥିଲେ ଶୀର୍ଣ୍ଣ, ବିବର୍ଣ୍ଣ ।

ଆଖି ମୁଦି ହୋଇ ରହିଛନ୍ତି । କରୁଣ ଭାବେ ଫ୍ରକ୍ ପିନ୍ଧା ଝିଅଟିଏ ପରି ପଡ଼ି ରହିଛନ୍ତି ଗାୟତ୍ରୀ ଅପା !

ଘର ଭିତରକୁ ଦ ପାହୁଣ୍ଡ ପଶି ଆସି ସେଇଠି ସେମିତି ଠିଆ ହୋଇ ରହିଲା ରେଖା । ତା' ପାଦ ଆଉ ଚାଲିଲା ନାହିଁ ।

ଗାୟତ୍ରୀ ଅପା କ'ଣ ସତରେ ଚାଲିଯିବ ?

କେବେ ବି ତ କଳ୍ପନା କରାଯାଇ ପାରେ ନାଁ !

ପାଦ ଚପି ଚପି ସେ ଶଯ୍ୟା ପାଖକୁ ଆସିଲା ।

ଆତଙ୍କ ତା' ମନ ଗହ୍ୱରକୁ ପଶି ଯାଇଥିଲା । ବୋଧହୁଏ···ତା' ଅଜାଣତରେ, ଏଇ କ୍ଷମାଶୀଳା କ୍ଷୀଣାଙ୍ଗୀ ଗାୟତ୍ରୀ ଅପା ହିଁ ଥିଲା ତା' ପାଇଁ ସାନ୍ତ୍ୱନା ଓ ଆଶ୍ୱାସନାର ଏକମାତ୍ର ଉତ୍ସ ।

କାଠି ପରି ହାତଟାକୁ ରେଖା ଟେକି ଧରିଲା ଦ' ପାପୁଲି ଭିତରେ ।

"ମୁଁ···ଆସିଛି ଗାୟତ୍ରୀ ଅପା !"

ମୁଦା ଆଖି ସାମାନ୍ୟ ଖୋଲି ଗଲା ଓ ପୁଣି ବନ୍ଦ ହୋଇଗଲା ।

କେତେ ସମୟ ପରେ କେଜାଣି···ଯେମିତି କୋଉ ଦୂରରୁ, କୋଉ ଅତଳାନ୍ତ ଗହ୍ୱରରୁ ଭାସି ଆସିଲା ଏକ ମୃଦୁ ସ୍ୱର···"ତତେ ଅଶୋକ ଲାଗିଲା, ଇଏ ଲାଗିଲେ···ଇଏ ତ ସାତ ଛୁଆଙ୍କଠୁ ବଳି । ତୋ' ଛଡ଼ା ଆଉ ମୋ'ର କିଏ ଅଛି ?"

ରେଖାର ତଣ୍ଟି ପାଖରେ କିଛି ଗୋଟାଏ ଅଟକି ଗଲା ।

"କଥା ଦେ ! ଅଶୋକକୁ···"

"କଥା ଦଉଚି । ଅଶୋକକୁ ମୁଁ ଉପଯୁକ୍ତ ମଣିଷ କରିବି ।"

"ସେ ଯେମିତି···ବହୁତ ପାଠ ପଢ଼େ ।"

"ହଁ ଲୋ । ପଢ଼େଇବି·· ବିଦେଶ ପଠେଇବି···ସେ···ମୋର ପୁଅ ହବ ।"

ପୁଣି ଯନ୍ତ୍ରଣାରେ ଛଟପଟ ହେଲା ଗାୟତ୍ରୀ ଅପା ।

"ଆଉ ସୁମାଙ୍କ କଥା ?"

ଉଠି ଆସୁଥିବା କୋହକୁ ବହୁ କଷ୍ଟରେ ସମ୍ଭାଳି ନେଲା ରେଖା ।

ଗାୟତ୍ରୀଙ୍କର ସରୁ ହାଡ଼ ହ'ଖଣ୍ଡର ହାତଟା ରେଖାର ମୁଣ୍ଡ ଉପରକୁ ଚାଲି ଆସିଲା ।

"ତୁ ତ ଜାଣିଚୁ ! କେତେ ଅସହାୟ ଇଏ । ଏ ନିଷ୍ଠୁର ଦୁନିଆରେ, ଅସମ୍ଭବ ଯନ୍ତ୍ରଣା ଭିତରେ ବଞ୍ଚି ରହିଥିବା ନିଃସହ, ଭାବପ୍ରବଣ ମଣିଷ ଟାଏ ।

ତୋ'ଠୁ ତାଙ୍କୁ ଆଉ ଭଲ କିଏ ଚହ୍ନିଛି କଏ ?"

ରେଖା ନିଜକୁ ଆସୁଉ ଭିତରେ ରଖି ପାରିଲାନି ।

କାହ୍ନା କହି ପାରିଲାନି, ତୋର କିଛି ହବ ନାହିଁ । ଏସବୁ କଥା କାହିଁକି କହୁଚୁ ? ଏମିତି କ'ଣ କହନ୍ତି ? ତତେ ଆମେ ପୃଥିବୀର ଯେ କୌଣସି କୋଣକୁ ନେଇଯିବୁ । ତୁ ନିଶ୍ଚୟ ଭଲ ହେଇଯିବୁ ଲୋ ! ମୁଁ ତତେ କଥା ଦଉଚି । ତତେ ଭଲ କରି ଗ୍ରୁଡ଼ିବ । ତୋ' ଛଡ଼ା ଦ୍ୱିତୀୟ ଲୋକ କେହି ସୁମନ୍ତ ଭାଇଙ୍କ ଦାୟିତ୍ୱ ନେଇ ପାରିବେନି ! କିଏ ବା ଧାରଣ କରି ପାରିବ ଏମିତିକା ମଣିଷକୁ ? ଆଉ କାହାର ସେ ଶକ୍ତି ଅଛି ?

କିଏ ଆଉ ମନ ଭିତରେ ଚାପି ଧରି ପାରିବ ସବୁ ଝଡ଼ ତୋଫାନ, ସବୁ ଯନ୍ତ୍ରଣାକୁ ? ?

କିଏ ହେଇ ପାରିବ ଏମିତି ସର୍ବଂସହା ଧରିତ୍ରୀ ?

ଗାୟତ୍ରୀ ଅପାର ପାପୁଲିଟାକୁ ଓଠ ଉପରେ ଚାପିଧରି ସେ କହିଁ କହିଁ ହେଇ କାନ୍ଦି ଉଠିଲା ।

କେତେ ହୀନ, ନୀଚ ସେ ସତରେ ! ପ୍ରତିଟି ମୁହୂର୍ତ୍ତରେ ସେ ଚାହିଁଥିଲା ସୁମନ୍ତଙ୍କୁ ଅନ୍ୟାୟ ଭାବେ ଛଡ଼େଇ ନେବ ଗାୟତ୍ରୀ ଆପା ପାଖରୁ ।

ଅଥଚ…କେତେ ସ୍ୱଚ୍ଛତା, କେତେ ପବିତ୍ରତା, ସ୍ନିଗ୍ଧତା…ଗାୟତ୍ରୀ ଅପା ପାଖରେ !

ଗାୟତ୍ରୀଙ୍କ ଆଖି ପୁଣି ବୁଜି ହେଇଗଲା ।

ଡ଼କ୍ଟର ମହାପାତ୍ର ଛିଡ଼ା ହେଇଥିଲେ ପରଦା ସେ ପଟେ । ଅନ୍ୟମାନଙ୍କୁ ଇସାରା ଦେଲେ ଭିତରକୁ ଯିବା ପାଇଁ । କମ୍ ଅନ୍ ! ବି କୁଇକ୍ ! ଶୀଘ୍ର ଆସନ୍ତୁ ।

ରେଖା ବାହାର ଆସିଲା । ଆସି ଏକୁଟିଆ ଠିଆ ହେଲା ଦାଣ୍ଡ ଘରେ । ନୀରବ ଥିଲା ସାରା ଘରଟା । ଶଙ୍କର ଗୋଟାଏ ସିଗ୍ରେଟ୍ ଭୁଷୁଡ଼ି ପଡ଼ୁ ଥିଲା···ମାଟି ସାଙ୍ଗରେ ମିଶି ଯିବାକୁ ଯାଉଥିଲା ସେଇ ଘର ଭିତରେ ।

ଏଠି ପହଞ୍ଚି ସେ ତ ଦେଖିଥିଲା···ସୁମନ୍ତଙ୍କ ଆଖିରେ କେତେ ଭୟ, କେତେ ଅସହାୟତା. କେତେ ଦୁର୍ବଳତା କିଂ କର୍ତ୍ତବ୍ୟ ବିମୂଢ଼ତା···ବିହ୍ୱଳତା··· ଗୋଟାଏ ପରାଜିତ ଆତ୍ମସ୍ୱାର୍ଥନ ମଣିଷ ପରି । ସବୁ ମିଶି ତାଙ୍କୁ ଯେମିତି କରି ଦେଇଥିଲା କନ୍ଦୁଆଳ ।

ସେ ଠିକ୍ ଜାଣିଥିଲା । ସୁମନ୍ତ ଧକ୍କା ସମ୍ଭାଳି ପାରିବେ ନାହିଁ । ଗାୟତ୍ରୀ ଅପା ବିନା ଏ ଦୁନିଆ ସାଙ୍ଗରେ ସେ ଆଉ ମୁକାବିଲା କରିବାକୁ ସମର୍ଥ ହେବେ ନାହିଁ ।

···କାନ୍ଦଣା ଶୁଭିଲା ।

ଗାୟତ୍ରୀ ଅପା ଗ୍ଲିଗଲା ।

ହଠାତ୍ କିଛି ଗୋଟାଏ ଓଲଟ ପାଲଟ ହେଇଗଲା ରେଖା ଭିତରେ ।

ଭୟ ଏବଂ କ୍ଲାନ୍ତିରେ ସେ ଆଉ ସେଠି ରହି ପାରିଲା ନାହିଁ ।

ଅନ୍ଧାର ଭିତରେ ସେ ବାହାରକୁ ବାହାରି ଆସିଲା । ଦାଣ୍ଡ ବାରଣ୍ଡାରେ ଠିଆ ହେଲା । ବେଶ୍ କିଛି ଦୂରରେ ଗାଡ଼ିଟା ବାଙ୍କ ମୋଡ଼ରେ ଥୁଆ ହେଇଛି ।

ଅସରାଏ ବର୍ଷା ବୋଧେ ହେଇ ଯାଇଛି । ଥଣ୍ଡା ପବନ ବୋହୁଛି ।

ହଠାତ୍ କେମିତି ପ୍ରଚଣ୍ଡ ଭୟ ତାକୁ ଗ୍ରାସ କରି ଆସିଲା । ଭୂତ ସବାର୍ ହେଲା ପରି ତରବରରେ ସେ ଗୋଟାଏ ଆବେଗରେ ରାସ୍ତା ଉପରେ ଏକା ଏକା ଗ୍ଲିଲା । ତା' ଗ୍ଲିର ଗତି ବଢ଼ିବାକୁ ଲଗିଲା । ସେ ଯେମିତି ସ୍ୱପ୍ନାବିଷ୍ଟ ।

ନିଘୁଟିଆ ରାସ୍ତା ।

ବର୍ଷା ପଡ଼ିବାକୁ ଆରମ୍ଭ କଲା ଓ ହେମାଳ ପବନ ବହିଲା ।

ସେ ଦୁଃସ୍ୱପ୍ନରେ ପଡ଼ି ଯାଇଥିଲା । ପ୍ରଚଣ୍ଡ ଭୟ ତାକୁ ଗ୍ରପି ଦେଉଥିଲା ସବୁ ଆଡ଼ୁ । ବର୍ଷା ଭିଜା ପବନ ପରି ଭୟ ପିଟି ହେଉଥିଲା ତା' ଦେହମୁଣ୍ଡ ସବୁଠି । ଭରି ଯାଇଥିଲା ମନରି ଅନ୍ଧ କନ୍ଦରେ ।

ମଝିରେ ମଝିରେ ସେ ପଛକୁ ଫେରି ଗ୍ୱହୁଁଥିଲା । ପୁଣି ଆଗକୁ ଗ୍ୱହୁଁଥିଲା ଓ ଦଉଡୁଥିଲା ଉଠି ପଡ଼ି ।

ଖୁବ୍ ଶିଘ୍ର ଘରେ ପହଞ୍ଚିବାର ବ୍ୟାକୁଳତା ତାକୁ ଅସ୍ଥିର କରୁଥିଲା ।

ଛାତି ଭିତରେ କିଏ ହାତୁଡ଼ି ପିଟୁଥିଲା ।

ରାସ୍ତାଧାରର ଗଛଗୁଡ଼ାକ ଭୂତ ପରି ଦିଶୁଥିଲେ ।

ଅଣନିଃଶ୍ୱାସୀ ହୋଇ ସେ ଦଉଡ଼ୁଥିଲା । ବାଳ ଫିଟି ପଡ଼ୁଥିଲା । ସେ ବର୍ଷାରେ ଭିଜି ଯାଇଥିଲା ଲୁଗାପଟା, ଦେହମୁଣ୍ଡ ।

ଗେଟ ଡ୍ୟୁଟିର ସିପେଇ ଓ ଅର୍ଦ୍ଦଳୀମାନଙ୍କୁ ଟପି ସେ ଖୁବ୍ ବେଗରେ ଘର ଭିତରକୁ ପଶିଗଲା । ଓଜାଡ଼ି ହୋଇ ପଡ଼ିଲା ବିଛଣା ଉପରେ ।

ନିବିଡ଼ ଭାବେ ସେ ଖୋଜୁଥିଲା ଜୟନ୍ତଙ୍କ ପ୍ରଶସ୍ତ ଛାତି, କୋମଳ ହାତର ସ୍ପର୍ଶ । ତାଙ୍କ ଉପସ୍ଥିତି । ନିରୁପଦ୍ରବ ନିରାପତ୍ତା ।

.. ଆଉ...ଠିକ୍ ସେତିକି ବେଳେ ଗାଡ଼ିଟା ପୋର୍ଟିକୋରେ ଅଟକିଲା । ଚଉଡ଼ା କାନ୍ଧ ଦ'ଟା ନଇଁ ଯାଇଥିଲା । ଧୀରେ ଆସି ରେଖା ପାଖରେ ଖଟ ଉପରେ ଅଳ୍ପ ତଫାତ୍‌ରେ ବସିଲେ ଜୟନ୍ତ । ସେ ବୋଧହୁଏ ଜୀବନରେ ପ୍ରଥମ ଥର ପାଇଁ ଏତେ ଭାଙ୍ଗି ପଡ଼ିଥିଲେ ।

ରେଖା ଦେଖିଲା, ପଥର ଫାଟି ଲୁହ ଝରୁଛି । ଜୟନ୍ତ କାନ୍ଦୁଛନ୍ତି ।

ନିଜ ବିଷୟରେ ଏତେ ନିଶ୍ଚିତ...ଏବଂ ସବୁବେଳେ ଅନ୍ୟକୁ ବିଦ୍ରୂପ କରୁଥିବା ମଣିଷ ଆଜି କାନ୍ଦୁଛି ।

ଜୟନ୍ତଙ୍କ କାନ୍ଧରେ ସେ ହାତ ଥୋଇଲା । କେତେବେଳକେ ସେ ଲୁହର ଝରଣା ବନ୍ଦ ହେଲା । ଜୟନ୍ତ ନିଜକୁ ସଂଜତ, ସ୍ୱାଭାବିକ୍ କରି ନେଲେ । କହିଲେ, "ଆସ ଯିବା !

ତମେ ସବୁ ବାକି ଜୀବନଟା ପାଇଁ ଯୋଡ଼ାଏ ପିଲାଙ୍କର ଦାୟିତ୍ୱ ନେଇଚ ? ବଞ୍ଚିଥିବା ପର୍ଯ୍ୟନ୍ତ ସେମାନଙ୍କର ଯତ୍ନ ନେବ ବୋଲି ପ୍ରତିଶ୍ରୁତି ଦେଇଛ ଯେ !"

ରେଖା ମୁହଁ ଟେକି ଚାହିଁଲା । ଜୟନ୍ତଙ୍କ ଆଖି ଆଜି ହ୍ରଦ ପରି ନିର୍ମଳ ।

ଜୀବନଟା ସାରା ତ କାହାକୁ ବି ସେ ଠିକ୍ ଭାବେ ବୁଝି ପାରିଲାନି । ଭାଇ, ଭାଉଜ, ସୁମନ୍ତ, ଗାୟତ୍ରୀ ଅପା କାହାକୁ ବି ନୁହେଁ ।

ଆଉ କେମିତି ବା ବୁଝି ପାରିଥା'ନ୍ତା ଜୟନ୍ତଙ୍କୁ ?

କାହାକୁ ତ ବୁଝି ନ ପାରି, ସମସ୍ତଙ୍କୁ ସେ ହକେଇ ଚାଲିଥିଲା ଏତେ ଦିନ ଧରି ।

ଜୟନ୍ତ ବା ସେଥିରୁ ବାଦ୍ ଯାଇଥା'ନ୍ତେ କେମିତି ?

କାହିଁକି ତାକୁ ଏମିତି ଉପାଦାନରେ ଗଢ଼ିଥିଲା ବିଧାତା କେଜାଣି ?

—*—